[ବାଇଶି]

## ଗୁଣ୍ଡିଚା ମନ୍ଦିର ବିଜେ ଗୀତ

ନୀଳାଚଳ ପୁଣ୍ୟ ତେଜ   କେଉଁ ଭାବ ମନେ ହେଜ
ଗୁଣ୍ଡିଚା ମନ୍ଦିରେ ଆଜ   ଅଛ ବିରାଜ ହେ ।୧।
ବଡ଼ଭାଇ ବଳରାମ   ଭଗିନୀ ସୁଭଦ୍ରା ନାମ
ସଙ୍ଗେ ଘେନି ସର୍ବଧାମ   ଏଥେ ବିଶ୍ରାମ ହେ ।୨।
ସେବକ ଯଥାବିଧିରେ   ତୂଳମାନ ଘେନି ଧୀରେ
ଯାଉଛନ୍ତି ସନ୍ନିଧିରେ   କେଉଁ ସିଧିରେ ହେ ।୩।
ପୃଷ୍ଠଦେଶେ ସେନାପଟା   ପାଟ ସୂତେ ଭିଡ଼ା ଅଣ୍ଟା
ଝଲକ ଲାବଣ୍ୟ ଛଟା   ଶୋଭା ଚହଟା ହେ ।୪।
ଦଇତା ସେବକେ ନଜେ   କରନ୍ତି ପହଣ୍ଡି ବିଜେ
ସେବାକୁ ନଇଲେ ଦ୍ୱିଜେ   ପାସୋରସେ[illegible] ହେ ।୫।
ଘଣ୍ଟ କାହାଳୀ କଂସାଳ   ମୃଦଙ୍ଗ କୁବୁଜା ତାଳ
ବାଜଇ ଝାଞ୍ଜି ଝଞ୍ଜାଳ   ବାଦ୍ୟ ବିଶାଳ ହେ ।୬।
ଐଶ୍ୱର୍ଯ୍ୟ ସୁଖ ଆକର   ନୀଳାଦ୍ରି ଦ୍ୱାରକା ପୁର
କରାଇଲ ଅସୁନ୍ଦର   ଘନ ସୁନ୍ଦର ହେ ।୭।
ଶ୍ରୀ ବ୍ରଜ ଗୁଣ୍ଡି ଗୃହରେ   ବିଜେ ଗୋପାଳ ନବେଶରେ
ଗୋପିକାଭାବାବେଶରେ   ମଜ୍ଜ ରସରେ ହେ ।୮।
ଏଥୁଁ ବାହୁଡ଼ୁଁ ମହିମା   କବାଟ କଲବେ ରମା
ତହିଁକ ବଚସ କର୍ମା   ମାଗିବ କ୍ଷମା ହେ ।୯।
ସେ କ୍ଷୀରସିନ୍ଧୁ ଦୁହିତା   ହୋଇଛନ୍ତି ମାନବତୀ
ହେରା ପଞ୍ଚମୀର ରୀତି   ଭାବ କଥାତ ହେ ।୧୦।

ଭୁମ୍ବର ଉପରେ ଘଗି ନନ୍ଦଘୋଷ ରଥ ଘଙ୍ଗି
ନାଏକା କାଟିକି ଫିଙ୍ଗି ଗଲେ ଶୋଭାଙ୍ଗୀ ହେ ।୧୧।
ଦେବଦାସୀଙ୍କର ସାଥେ ସେ ହେଉଗୋହ୍ୱରା ପଥେ
ବାହୁଡ଼ିଲେ ମନ ବ୍ୟସ୍ତେ କ ମନୋରଥେ ହେ ।୧୨।
ନବଦ୍ୱନ ଯାନା ସାର ଗଲେ ପୁଣି କମ୍ବୁଧାମ୍ବ
ଦେବେ ଟି ମହତ ସାର ସିନ୍ଧୁ କୁମାର୍ଯ୍ୟ ହେ ।୧୩।
ମିଳନ୍ତେ ସିହ୍ନଦୁଆରେ କାନ୍ଧବ କୁଆ ବୁଆରେ
ଯାଉବ କ କଳଆରେ ଚେତ ହୃଆରେ ହେ ।୧୪।
ସେ ଖଳାଦ୍ରି ସାମନ୍ତାଣୀ କହିବେ ନିଷ୍ଠୁର ବାଣୀ
ସହ୍ଵବ ଛଳ କାହାଣୀ ଲ୍ଵବଣ୍ୟଠାଣି ହେ ।୧୫।
ଠାକୁରାଣୀଙ୍କ ସ୍ନେ ରେଷ ଭଙ୍ଗାଇ ମାଗିବ ଦୋଷ
ତେବେ ସେ ହୋଇବେ ତୋଷ ଜଗନ୍ନିବାସ ହେ ।୧୬।
ଗଉର ଚରଣ ଭଣି ଦେବଙ୍କ ମଣ୍ଡଳମଣି !
କ ରତନ ଦେଲେ ଗଣି ଗୋପ ରମଣୀ ହେ ।୧୭।

---

[ତେଇଶି]

## ବାହୁଡ଼ା ବଜେ ଗୀତ

ବଡ଼ ଠାକୁରଙ୍କ ସହୋଦର ହେ !
ମୋ ଜଣାଣେ ନୁହ କାଳ
ବଡ଼ଦାଣ୍ଡେ ବଡ଼ ଭୁଜକୁ ବସ୍ତାର
ବଡ଼ ଦେଉଳକୁ ଯିଲ । ଘୋଷା ।
ବଡ଼ ପଣେ ବଡ଼ ଛଇକ ଦେଖାଅ
ପିନ୍ଧ ବଡ଼ ଧଣ୍ଡାମାଳ

ବଡ଼ରଜା କର ଯୋଡ଼ ଡାକୁଛନ୍ତ
ତାଙ୍କ ଗୁହାରି ନ ଶୁଣ ।୧।
ବଡ଼ପଣ୍ଡା ବଡ଼ ସୁଆର ସେବକେ
କଲେଣି ବଡ଼ ପଖାଳ
ବଡ଼ ଠାକୁରାଣୀ ରୋଷ ହେବେ ବଡ଼
ଏ କଥା ମନରେ ଭାଳ ।୨।
ବଡ଼ ପାବଚ୍ଛୁଆ ବଡ଼ ଅଳସୁଆ
ପଣ ଗୁଡ଼ ତତକାଳ
ବଡ଼ ନୟନଙ୍କୁ କବା ଅଗୋଚର
ବନ୍ଧ ଦୁଖୀଙ୍କ ଜଞ୍ଜାଳ ।୩।
ବଡ଼ ସିଂହାର ବେଶକୁ ଦରଶନ
କରିବାକୁ ମୋ କପାଳ
ବଡ଼ ଅରକ୍ଷିତ ଗଉର ଚରଣ
ଭଜେ ଶ୍ୟାମ କାମପାଳ ।୪।

———

[ଚବଶ]

## ଝୁଲଣଯାତ ଗୀତ

(ରାଗ ତୋଡ଼ ଆଠତାଳୀ)

[ଦାଣ୍ଡ ଝୁଲୁଛି ଗୋ ଦିଶୁଛି କେଡ଼େ ସୁନ୍ଦର-ବୃତ୍ତ]

ସରି ଯାଉଛି ଗୋ ସୁଖର ଝୁଲଣ ଯାତ
ଦେଖିଥାଅ ଥରେ ନୟନ ପଥରେ
ମୋପ୍ରାଣସହି ! ସଙ୍ଗାତ ! । ଘୋଷା ।

ଶ୍ରୀଭାନୁ ଦୁଲାଳୀ          ଝୁଲେ ବନମାଳୀ
ଫୁଲ ଦୋଳରେ ସଜେ ତ
ସଖୀଗଣ ମିଳି          ଦେଇ ହୁଳହୁଳି
ଝୁଲନ୍ତ କି ରଙ୍ଗରେ ତ ।୧।
ମର୍ଦ୍ଦଳ ମଧୁର          ବୀଣା ଏକତାର
ଶଙ୍ଖ ମହୁରୀ ବାଜେ ତ
ରବା ଭେଷ ଭୂଷ          ସଜଯୁ କାହାଳୀ
ମଧୁର-ସ୍ୱର ସହିତ ।୨।
ମୃଦଙ୍ଗ କଂସାଳ          ଘଣ୍ଟା କରତାଳ
ସାରଙ୍ଗୀ ବାଜେ ତା ସାଥ
ନାଗରା ଟିକର          ଖଞ୍ଜଣୀ ଧୁମ୍ବୁର
ବାଦ୍ୟ କେ କରିବ ଅନ୍ତ ।୩।
ରାଗ ଆଳାପିଣ          କରୁଛନ୍ତି ଗାନ
ମାନସ ଭୁଲି ସଙ୍ଗୀତ
ଦେବ ଦୁନ୍ଦୁଭିର          ଝୁଲେ ଗୀତସ୍ୱର
ଶୁଭୁଅଛି ଅଲୌକତ ।୪।
ଗଉର ଚରଣ          ବୋଲେ ମୁଁ ଶରଣି-
ରକ୍ଷଣ କୃଷ୍ଣଙ୍କ ଭୃତ୍ୟ
ଦରଶନ କରି          ସେ ଶୋଭା ମାଧୁରୀ
ଛାମୁରେ କରିବ ନୃତ୍ୟ ।୫।

———

[ ପଚଶ ]

## ଶ୍ରୀଗୌରଚନ୍ଦ୍ରିକା

ଜେ ଜେ ଚୈତନ୍ୟଚନ୍ଦ୍ର ଜେ ନବଦ୍ୱୀପବାସୀ ।
ସୁନ୍ଦର ମୁଖ କୁନ୍ଦରଦନ ମନ୍ଦ ମଧୁର ହାସୀ ॥ ଘୋଷା ॥
ହିଜଗନ୍ମୋହନ ମୁରତସାର କଣ୍ଠେ ଲୁଳଇ ତୁଳସୀହାର
କୋଟି ମଦନ ଗଞ୍ଜ ଗଞ୍ଜ ସୁନ୍ଦର ରୂପ ରାଶି ।୧।
ପତିତ ରକ୍ଷଣେ ଊର୍ଦ୍ଧ୍ୱହସ୍ତ ଦେଖିଣ କପଟ ପଟଳ ଧ୍ୱସ୍ତ
ଦୁଷ୍ଟ ଦଳନେ ହୃଷ୍ଟ ବଦନ ମହିମା ପରକାଶି ।୨।
ଦାହ ପୂରଟ କନ୍ତକାନ୍ତ ଚମ୍ପକ ଦେଖି କରଇ ଭ୍ରାନ୍ତ
ଶ୍ରୀ କର୍ପୂର ଅତର ଗନ୍ଧ-ଚନ୍ଦନେ ତନୁ ଭୂଷି ।୩।
ବରୁଣ କୁବେର ଇନ୍ଦ୍ର ଚନ୍ଦ୍ର ନାମ ଭଜନ କରନ୍ତ ଯାନ୍ତ
ଭୁବନମଙ୍ଗଳ ଯା ଶ୍ରୀଚରଣେ ପଦ୍ମାଳୟା ଦାସୀ ।୪।
ଶଚୀର ତନୟ ନବକିଶୋର କଣ୍ଠ ଗଦଗଦ ପ୍ରେମେଘୋର
ବିମ୍ବାଧରେ ରାଧେ ରାଧେ ମଧୁର ବଚନ ଭାଷି ।୫।
ଗୌରଶ୍ରୀଚରଣ ଅରୁଣତେଜ ଶରଣ ଗଉରଚରଣ ଦ୍ୱିଜ
ଯାରେ ସେ ପଦ ଅଳ୍ପ ସଦୟ କଳ୍ପକଳ୍ମଷ ନାଶି ।୬।

———

[ ଛବଶ ]

## ଶ୍ରୀଚୈତନ୍ୟଚନ୍ଦ୍ର ଭଜନ

ରେ ଚିତ୍ତ, ଚୈତନ୍ୟଚନ୍ଦ୍ର ଚରଣସରସିରୁହ ଧ୍ୟାନରେ ।
ତେଜ ମନୁ ଆନ ଶତ ପ୍ରୀତି କର ତୁ ନିତ ନାମ ଗାନରେ ॥
। ଘୋଷା ।

ଯାର ସୁମଧୁରଭାଷ କର୍ପୂର ହାସ ପୂରି ମୁଖେ ପ୍ରେମେ ଗରଗର ।
ଆଶ ଲଗାଅ ତୁ ତ୍ରାସ ଦୂର ହେବ ଦାସଭବେ ନିଦାନରେ ।୧।
ଚନ୍ଦ୍ରକରଜିତ କର୍ଣ୍ଣକୁଣ୍ଡଳ ପୂର୍ଣ୍ଣ ଶଶଧର ଶ୍ରୀମୁଖ ମଣ୍ଡଳ
ଦଣ୍ଡକମଣ୍ଡଳୁଧାରୀ କଟୀତଟେ କୌପୀନ ପରିଧାନ ରେ ।୨।
ଅମ୍ବୁଜାକୃତି ନେତ୍ର ଢଳ ଢଳ କମ୍ବୁଗ୍ରୀବ ସୁବିସ୍ତାର ବକ୍ଷସ୍ଥଳ
ଜମ୍ବୁନଦଜିତ କାନ୍ତି ତନୁର ଯାର ଜନ ପରିତ୍ରାଣ ରେ ।୩।
ସତ୍ତ ମୁଖେ ଗୌରାଙ୍ଗ ନାମକୁ ନାଶ ଅମଙ୍ଗଳ କପଟ କାମକୁ
ଦାସ ଗଉରର ଆଶ ସେହି ପଦ ପଙ୍କଜ-ମଧୁପାନ ରେ ।୪।

———

[ସତେଇଶି]

## ଶ୍ରୀ ଗୌର ଭଜନ

ଯାଅ ନଦିଆଦେଶକୁ ମାନସ ଗାଅ ଗଉର ଗୁଣ ରେ
ବାଅ ମୃଦଙ୍ଗ କରତାଳକୁ ତାଳେ ତାଳେ ଅନୁକ୍ଷଣରେ ।ଘୋଷା।
ପାଅ ଲସି ସେ ଚରଣାମୃତକୁ ରଙ୍କ ପରି ପୁଣ ପୁଣରେ ।
ପାତଳେ ପଡ଼ ଭକ୍ତିଭରେ ତୁ ଦଶନରେ ଧରି ତୃଣରେ ।୧।
ଖାଅ ସାଧୁଙ୍କ ଶେଷ ଉଚ୍ଛିଷ୍ଟ ଛଳେ ନୋହି ଅବଗୁଣରେ ।
ଧ୍ୟାଅ ଶ୍ରୀ ବ୍ରଜଦମ୍ପତି ମିଳନମୂର୍ତ୍ତିଙ୍କୁ ମୁଖ୍ୟ ଠାଣରେ ।୨।
ଥାଅ ଜାହ୍ନବୀ ତଟରେ ବାସ କରି ନ ହୁଅ ଏଥି କୃପଣରେ ।
ନ୍ୟାପୁରେ ଗୌର ଭକତଙ୍କ ଭୁଲେ ଗଣାହୁଅ ଏକ ଜଣରେ ।୩।
ତା ଅଭାବ ତ ନୋହିବ ତୋରେ ଦୟାଳୁ ସେ ସାଧୁଗଣରେ ।
ଧାଅଁ ଚଞ୍ଚଳେ ଭଣି ଗୌର ବୋଲି ପରିହାସକୁ ନ ମଣରେ ।୪।

———

[ଅଠେଇଶ]

## ଶ୍ରୀଗୌର ଭଜନ

ରେ ମୂଢ଼ମନ ! ଦୃଢ଼କର ଧେନ ଶ୍ରୀ ଗୌର ଭଜନ ॥ଘୋଷା॥
କଳିଯୁଗ ମତ୍ତ ମାତଙ୍ଗ ଦଳନ ପ୍ରମତ୍ତ କେଶରୀ ଶ୍ରୀ ଶଚୀନନ୍ଦନ
ଏମନ୍ତ ସୁନ୍ଦର କନକ ବରନ ପଦ ସଦା କର ଧ୍ୟାନ ।୧।
ନୟନ ଯୁଗଳ କର୍ଣ୍ଣ ଆୟତନ, ନବ ବିକଶିତ ଅରୁଣ-ନଳିନ
ଏମନ୍ତ ସୁନ୍ଦର ପଙ୍କଜ-ଲୋଚନ ପଦ ସଦା କର ଧ୍ୟାନ ।୨।
ଲକ୍ଷ୍ମୀ ବିଷ୍ଣୁ ପ୍ରିୟା ଜୀବନଈଶ୍ୱର କନ୍ଦର୍ପ ମୋହନ ମୂର୍ତ୍ତି ବିଶ୍ୱମ୍ଭର
ଏମନ୍ତ ସୁନ୍ଦର ନବ ନଟବର ପଦ ସଦା କର ଧ୍ୟାନ ।୩।
ଅପାର ମହିମା ଅନନ୍ତ ଗୁଣନିଧି କ୍ଷମାନିଧାନ ଶ୍ରୀ କରୁଣାବାରିଧି
ଗୌର ଦ୍ୱିଜ ଗିର ଏମନ୍ତ ସୁନ୍ଦର ପଦ ସଦା କର ଧ୍ୟାନ ।୪।

———

[ଅଣତିରିଶ]

## ଗୌର ଦର୍ଶନ ଲାଳସା

(ସତେ ବୃନ୍ଦାବନେ ଏ ପାପ ନୟନେ-ବୃତ୍ତ)

ସତେ କି ନବଦ୍ୱୀପପୁରେ ବିଷ୍ଣୁପ୍ରିୟା ପରାଣ ନାଥଙ୍କୁ ଦେଖିବ
ଶଚୀ ମାତାଙ୍କର ନୟନ ପିଆଲା ଗୋରାନାମ ହୃଦେ ଲେଖିବ । ପଦ ।
ଶ୍ରୀବାସ ଅଙ୍ଗଣେ ଗୌରଭକ୍ତଗଣେ ସଙ୍କୀର୍ତ୍ତନାମୃତ ଚାଖିବ
ସାଧୁଙ୍କର ପଦ-ଧୂଳିକି ସମ୍ପଦ କରି ସର୍ବାଙ୍ଗରେ ମାଖିବ ।୧।
କରି ମନ ନିଷ୍ଠ ସନ୍ତଙ୍କ ଉଚ୍ଛିଷ୍ଟ ସାଦରେ ତୁଣ୍ଡରେ ଭକ୍ଷିବ
ଗୌର ଛଡ଼ାଫୁଲ ତୁଳସୀ ଅମୂଲ୍ୟ ଚୂଳରେ ପୂଜଇ ରଖିବ ।୨।

ଅକଳନ ଭକ୍ତ ଗୋଷ୍ଠିରେ ପଶି ମୁଁ ସକଳ ତାପ ଉପେକ୍ଷିବ
ସିଦ୍ଧ ସାଧକଙ୍କ କଙ୍କର ଭାବରେ ସାଧନ ପ୍ରଣାଳୀ ଶିଖିବ ।୩।
ନୃତ୍ୟ ସଙ୍ଗୀତହିଁ ହେଉଥିବ ଯହିଁ ତହିଁ ମୋ ଲୟକୁ ଯୋଖିବ
ମଧୁର ମୃଦଙ୍ଗ ତାଳ ମାନ ରଙ୍ଗ ରସେ ତା ତା ଧେୟା ଭାଖିବ ।୪।
ଶ୍ରୀ ଗୌର ନନ୍ଦୁକ ପାଷଣ୍ଡି ତାର୍କିକ ଦୁର୍ଜନଙ୍କ ସଙ୍ଗୁ ତର୍କିବ
ମହା କାରୁଣିକ ପ୍ରେମ ସିନ୍ଧୁ ଭୁଲେ କ ଉପମା ସ୍ଥିର ଲକ୍ଷିବ ।୫।
ହା ହା ପ୍ରାଣନାଥ ଗୌରାଙ୍ଗ ବୋଲି ମୁଁ ଗଡ଼ି କେଉଁଦନ ଶିଖିବ
ଗୌରଦ୍ୱିଜ ଭାଳ ଧର ଜପାମାଳୀ ଶ୍ରୀଗୁରୁ ଆଜ୍ଞାକୁ ଠାକବ ।୬।

---

[ ତରଣ ]

## ଶ୍ରୀ ହରନାମ ମାଧୁରୀ ଭଜନ

[ ପୀତପଟ କପଟ-ପ୍ରୀତି କର ଶ୍ରୀମନ୍ତଙ୍କ ସଡ଼ାଇଲ ହେ—ବୃତ୍ତେ ]

ହରିନାମ କେଡ଼େ ସୁମଧୁର
ଯେ ଚାଖିଛୁ ସେହୁ ଜାଣେ ପିଲା ରେ ।
ଅଭକତ ଜନେ ଜାଣିବେ କି କାହୁଁ
ସୁରସିକ ବ୍ରଜ-ଭକ୍ତ ବନା ରେ । ଘୋଷା ।
ସଦଗୁରୁ ଆଶ୍ରୟ ଯାର
ସେହୁ ଜାଣେ ସ୍ୱାଦୁ ଏହାର
ବଇଷ୍ଣବ ସେବା କରଅଛୁ ଯେ ବା
ସେ ହୃଦେ ବହୁଛୁ ପ୍ରେମମୀନା ରେ । ୧ ।
ଦ୍ୱିଜ କୁଳେ ଜନମ ଲଭି
ଥିଲେ ହେଲେ ତା ହୃଦ ପବ

ଶ୍ରୀରାଧା ଗୋବିନ୍ଦ ଯୁଗଳ ପଦାବ୍ଜ
ମଧୁକୁ ଯଦି ନ କଲୁ ଧେନା ରେ । ୨ ।
ଯେ ମଜ୍ଜି ଛନ୍ତି ବିଷୟ୍ୟା ରସେ
ଦମ୍ଭ ଅହଂକାରେ ସରସେ
ସେ ମୂଢ଼ ବର୍ବର କପରି ବୁଝିବ
ସାଧୁଜନଙ୍କର ଯେ ଅବସ୍ଥା ରେ । ୩ ।
ମହାଭାବ ସ୍ୱରୂପା ଧନୀ
କୃପା ହେଲେ କି ଅଛି ହାନି
କହଇ ଗଉର- ଚରଣ ଅଜ୍ଞାନୀ
ଭକ୍ତି ନାହିଁ ମୋର ଏକ ଚିନ୍ତା ରେ । ୪ ।

———

[ଏକତାରଣ]

## ଶ୍ରୀ ହରିନାମାମୃତ ଭଜନ

( ରାଗ ମଙ୍ଗଳ ଗୁର୍ଜ୍ଜରୀ—ତାଳ ପହପଞ୍ଚ )

ସୁମଧୁର ହରିନାମେ ମଜ୍ଜ ଆରେ ମନ
କାହିଁପାଇଁ ଏଣେ ତେଣେ ଧାଇଁ ହେଉ ଛନ୍ନ । ଘୋଷା ।
ଅନ୍ୟ ଚିନ୍ତା ବୃଥା କଥା ଛାଡ଼ି ରେ ବଦନ
ଶ୍ରୀ ନାମେ ତୋ ଅନୁରାଗ ବଢ଼ାଅ ଯତନ । ୧ ।
ନାମେ ଗତି ନାମେ ମୁକ୍ତି ନାମେ ଶାନ୍ତି ଜାଣ
ନାମେ ପରମ ଆନନ୍ଦେ ଉଲସାଅ ପ୍ରାଣ । ୨ ।
ନିରବଧି କର ବନ୍ଧି ନାମ ରସ ପାନ
ତର ଆଶାକୁ ମେଣ୍ଟାଅ କରି ନାମ ଧ୍ୟାନ । ୩ ।

ଦେଖ ନିଜ ହୃଦୟରେ ନିତ୍ୟ ବୃନ୍ଦାବନ
ଉଜ୍ଜ୍ୱଳିବ ପ୍ରେମ ସିନ୍ଧୁ ଲଭି ଦିବ୍ୟ ଜ୍ଞାନ । ୪ ।
ସର୍ବତୀର୍ଥ ସର୍ବଧାମ ଶ୍ରୀକୃଷ୍ଣଚରଣ
ସେହି ପଦ ଏକା ସ୍ୱର୍ଗ ବୈକୁଣ୍ଠ ଭୁବନ । ୫ ।
ସର୍ବଧର୍ମ ଯାଗଯଜ୍ଞ ତପ ବ୍ରତ ମାନ
ହରିପଦ ସ୍ମରଣରେ ପାଇବୁ ନିଦାନ । ୬ ।
ସାଧୁ ଭକ୍ତଙ୍କର ଯେଉଁ ନିତ୍ୟ ନିକେତନ
ସେହି ଶାନ୍ତିମୟଧାମେ କର ଅବସ୍ଥାନ । ୭ ।
ଗୌର ଦ୍ୱିଜ ବୋଲେ ଜାଣି ନ ହୁଅ ଅଜାଣ
ଭଜ ହରି ପାଦପଦ୍ମ ଉଲସାଇ ପ୍ରାଣ । ୮ ।

—※—

[ବିଡଣ]

## ଶ୍ରୀ ଶ୍ୟାମ ନାମ ଭଜନ

ଭଜ ରେ ମନ ! ଶ୍ୟାମ ସୁନ୍ଦର
ନାମକୁ ଅନୁବରତରେ ।
ପାମର ମନ କାମ ବିରଜ
ଧାମ ବିରଜିଥିର ତ ରେ ॥ ଘୋଷା ॥
ଦାସ ଘୋଷ ଗୃହ ବାସ—
ଆଶରୁ ତୁ ନିବରତ ରେ
ଦାଶରଥିର ଦାସ ହୋଇ
ଉଦାସରେ ଦିନ ହରି ତ ରେ । ୧ ।
ଆନ ରସରେ କାନ ନ କର
ମାନ ମୋହରି ଗିରି ତ ରେ

କାଲ ହୋଇ ତୁ ଜାଲେ ନ ପଡ଼
ଗୃଲ ବ୍ରଜକୁ ତରତରେ । ୨ ।
ଜାୟା ସୁରତ ମାୟାରେ ପଡ଼ି
ବାୟା ହୋଇ ନ ମର ତ ଡରେ ।
ଘୃଣ୍ୟାରମଣତନୟା ଜଳରେ
କାୟା ଧଉତ କର ତ ରେ । ୩ ।
କୁଣ୍ଡ ସଲିଳେ ମୁଣ୍ଡ ଝାଳି
ତୁଣ୍ଡରେ ନେଇ ଭର ତ ରେ
ଦଣ୍ଡଧର ଉଦ୍ଦଣ୍ଡ ଦଣ୍ଡ
ଦଣ୍ଡକେ ତୁ ହର ତ ରେ । ୪ ।
ଦ୍ୱିଜ ଗଉର ଚରଣ ଶରଣ •
ଅରୁଣ ଚରଣେ କରତ ରେ
ଛେଦିବେ ଏ ଭବଭୂୟକୁ
ଅଭୟ କିଶୋର କରୁଣାକରତରେ । ୫ ।

---

[ତେତିଶ]

## ଶ୍ରୀ ହରିନାମ ଭଜନ

ହରଷେ ହରିନାମକୁ ମନ ! କରଚେ ବସି ଗା ରେ ।
ଗୋବିନ୍ଦ ଗୋପୀନାଥ ମଦନମୋହନ ପଦ ଧ୍ୟା ରେ । ଘୋଷା
କଳିତ ନୁହଇ ଲଳିତାଙ୍ଗୁଳି ଚଳିତ ବଂଶୀ ଦ୍ୱାରେ ।
ଝଳିତ ବଦନ ଖଳିତ ହାସ ଗଳିତ ପୀୟୂଷ ଧାରେ ।୧।
ପୁଞ୍ଜ ପୁଞ୍ଜ ଗୁଞ୍ଜ ଗୁଞ୍ଜା ଖଞ୍ଜିତ ଅଳକା ରେ ।
ଷଟ୍‌ପଦକୁଳ ବେଷ୍ଟିତ ଚୂଳ ସୁମନସ-କଳିକା ରେ ।୨।

ବାଙ୍କ ମୋହନ ବଂଶୀ ଝାଙ୍କ କରେ କୁଳବନ୍ଧତାରେ ।
କାମ ମୋହନ ଭଙ୍ଗୀ ରଙ୍ଗୀ ସଙ୍ଗୀ ସୁବଳ ଯା ତରେ ।୩।
ଚନ୍ଦନ ଘନସାର ଆଉ ଚନ୍ଦ୍ରାମୃତ ଧାରେ ।
ଗୁରୁ ଶୀତଳ ହାର ପାତଳ ଯିବେ ଯା ଛଳପାରେ ।୪।
ଦ୍ୱିଜ ଗଉର ଘବନ ନଜ ସେବନ ଅନୁସାରେ ।
ଯତ୍ନେ ଯୁଗଳ ନାମ ରତନ କଣ୍ଠ ଭୂଷଣ ହାରେ ।୫।

———

[ଚଉତରଣ]

## ଶ୍ରୀ ନାମାବଳୀ ଭଜନ

ଶ୍ରୀ ନୃସିଂହ ଲକ୍ଷ୍ମୀନାଥ ନାରାୟଣ ଦେବ ।
ନରନ୍ତର ନଶିବାସର ଚନ୍ତରେ ମନ ଏବ । ଘୋଷା ।
ମାଧବ ମଧୁସୂଦନ ହର ଜଗନ୍ନାଥ ସ୍ୱାମୀ ।
ନରଞ୍ଜନ ନଙ୍କ କଳ୍କ ଅନନ୍ତ ଅନ୍ତର୍ଯ୍ୟାମୀ । ୧ ।
ଶ୍ରୀକର ଶ୍ରୀସତ୍ୟବାଣ ଶ୍ରୀନିବାସ ଶ୍ୟାମ ।
ଶ୍ରୀଧର ଶ୍ରୀପୁରୁଷୋତ୍ତମ ରାଘବ ଅଭିରାମ । ୨ ।
ପରମ ବ୍ରହ୍ମ ପୁରୁଷଶ୍ରେଷ୍ଠ ଭକ୍ତଜନଙ୍କ ବନ୍ଧୁ ।
ଭୁବନେଶ୍ୱର ଭୟଭଞ୍ଜନ ନୀଳଶୈଳଇନ୍ଦୁ । ୩ ।
କୌଣପକୁଳଗର୍ବଖର୍ବକାରୀ ସୁଜନରକ୍ଷ ।
ହେ ମୁକୁନ୍ଦ ଦାମୋଦର ସର୍ବସାକ୍ଷୀପକ୍ଷ । ୪ ।
ମତ୍ସ୍ୟ କଚ୍ଛ ଶ୍ରୀ ବରାହ ନୃସିଂହଅବତାର ।
ବାମନ ଶ୍ରୀ ପରଶୁରାମ କ୍ଷତ୍ରିୟ କୁଳସାର । ୫ ।
ତପନ-ବଂଶମଣ୍ଡନ ଶ୍ରୀରାମଚନ୍ଦ୍ର ସ୍ୱାମୀ ।
ଜନକ ସତ୍ୟ ପ୍ରତିପାଳନ ହେତୁ ବନଗାମୀ ।୬।

ସପ୍ତ ଉରଗ ମସ୍ତକ ପର ହଲ ମୂଷଲଧାରୀ ।
ସଂକର୍ଷଣ ଅବତାରକ ତ୍ରଳାମ୍ବାନ୍ତକାରୀ ।୭।
ବୌଦ୍ଧ କଲ୍କି ଅନନ୍ତ ଅବତାର ସୃଷ୍ଟି ହେତୁ ।
ଧର୍ମ କର୍ମ ସଂସ୍ଥାପନ ଧରଣୀ ଧର୍ମ ସେତୁ ।୮।
ହେ ଗୋବିନ୍ଦ ଆନନ୍ଦକନ୍ଦ ଅଭୟ ପାଦପଦ୍ମ ।
ହେ ଅଚ୍ୟୁତ ଆର୍ତ୍ତତ୍ରାଣ ସର୍ବବନୋଦସଦ୍ମ ।୯।
ହେ ନବୀନ ଜଳଦ କାନ୍ତ ହେ ବ୍ରଜେନ୍ଦ୍ର ନନ୍ଦନ ।
ହେ ନଟବରମଦନମୂର୍ତ୍ତି ଗୋପିମାହୃଦ ଚନ୍ଦନ ।୧୦।
ହେ ମୋହନ ନବକିଶୋର ଶ୍ରୀବ୍ରଜପୁର ମଣ୍ଡନ ।
ହେ ଗୋକୁଳପଶୁପାଳକ ଦୁଷ୍ଟ ଶିଷ୍ଟ ଖଣ୍ଡନ ।୧୧।
ହେ କଦମ୍ବତଳଲମ୍ପଟ ଯୁଗ୍ମାର୍ଜ୍ଜୁନଭଞ୍ଜନ ।
ହେ ରସିକ ରାସେଶ୍ୱର କାଳୀଗର୍ବଗଞ୍ଜନ ।୧୨।
ହେ ବୃନ୍ଦାରୁଦର୍ପଦଳନ ଗୋବର୍ଦ୍ଧନ ଧାରଣ ।
ହେ ଦାବାଗ୍ନି ଭକ୍ଷକାରୀ ଗୋଗୋପାଳତାରଣ ॥
ହେ କାମିନୀ ନେତ୍ରାଞ୍ଜନ ନିତ୍ୟ ନୂତନଭଙ୍ଗି ଯୁ ।
କାମମୋହନ ଶ୍ୟାମସୁନ୍ଦର ଦାମସୁବଳସଙ୍ଗି ଯୁ ॥
ଦ୍ୱିଜ ଗଉର ଚରଣ ଭାଷେ ହେ କିଶୋରୀ ବଲ୍ଲଭ ।
ମଦ୍ ବାଞ୍ଛିତ ଶ୍ରୀବୃନ୍ଦାବନ ଭକ୍ତଙ୍କ ସୁଲଭ ।୧୪।

---

[ପଞ୍ଚଚରଣ]

## ଶ୍ରୀ ହରିନାମ ମହିମା ଭଜନ

(ରାଗ—ଶଙ୍କରାଭରଣ ତାଳ ଆଠତାଳୀ)

[ଭଜ ରାଧେକୃଷ୍ଣ ବୋଲ—ବୃତ୍ତେ]

ମନ ଭଜ ନିସ୍ତାକରି ।

ହରେକୃଷ୍ଣ ମହାମନ୍ତ୍ର ତୋ ଅକ୍ରମ ଶିକ୍ଷା । ଘୋଷା ।

ଏ କଳିଯୁଗେ ଶ୍ରୀହରି ନାମ ରୂପେ ଜାତ
ନାମ ବଳେ ଉଦ୍ଧାରନ୍ତି ସକଳ ଜଗତ । ୧ ।
ନାମାକ୍ଷର ମାତ୍ରେ ହୁଏ ସର୍ବ ପାପକ୍ଷୟ
ସର୍ବମନ୍ତ୍ର ସାର ନାମ ଅକ୍ଷୟ ଅବ୍ୟୟ । ୨ ।
ଅଚିନ୍ତ୍ୟ ଅଦ୍ଭୁତ ନାମ ଚିତ୍ତ ବ୍ୟବହାର
ନାମରତ୍ନମାଳାଗୋଟି କର ହୃଦେ ହାର ।୩।
ଏ ମହିମା ନ ଜାଣନ୍ତି ତାର୍କିକ ଗୁଆଁର
ପଡ଼ନ୍ତି ସେ କୁମ୍ଭୀପାକେ ନ ପାଇ ନିସ୍ତାର ।୪।
ଗୌର ଦ୍ୱିଜ ବୋଲେ ଧନ୍ୟ ଗୌର ଅବତାର
ସଂକୀର୍ତ୍ତନ ଛଳେ ନାମ କଲେ ଯେ ପ୍ରଚାର ।୫।

———

[ଛଚରଣ]

## ଶ୍ରୀ ହରିନାମ କୀର୍ତ୍ତନ ଭଜନ

କର ମନ ହରିନାମ କୀର୍ତ୍ତନ କହୁଛି ମୁଁ ତୋତେ ବାରମ୍ବାର । ଘୋଷା ।

କଳିତ ଲଳିତ ମଧୁର ବେଶ ଖଳିତ ଲଳିତ ଚନ୍ଦ୍ରହାସ
ଚଳିତ ଚରଣ କମଳ ଯୁଗଳୁଁ ମଧୁ ମକରନ୍ଦ ଧାର ଧାର ।୧।

ଯେଉଁ ସୁତତ୍ତ୍ୱରେ କହୁଛି ସାର ନବଘନ ତନୁ ନବ କିଶୋର
ଚେତ ଭଜ ମନ ! ଅଳସ ନକର ହରି ଚରଣତର ସାର ସାର । ୨ ।
ଛିଣ୍ଡିବ ଅଳ୍ପକେ ଏ ମୋହ ଫାଶ ଜଗବନ୍ଧୁ ନାମ ଯତନେ ଘୋଷ
ଝଗଡ଼ ମରନା କୃଷ୍ଣନାମ ବିନା ଗତି କେ ବା ଏହି ଆର ଆର ।୩।
ନିଶି ଦିବସରେ କର ତୁ ଧ୍ୟାନ ଟିକାଏ ମନରେ ନ ଧର ଆନ
ଠାକୁର ଚରଣେ ଆଶ୍ରେ କରିଥିଲେ ଛିଣ୍ଡିବ ଦୁର୍ଗତି ଘୋର ଘୋର ।୪।
ଡେଉଁଥା ଶ୍ରବଣେ ନାମକୁ ତାର ଢାଳେ କି ବିପତ୍ତି ରହିବ ଆର
ଆନନ୍ଦ ନାମ କନ୍ଦରୁ ମଧୁର ପୀୟୂଷକୁ ବୋଲେ ସ୍ଥିର ସ୍ଥିର ।୫।
ତୁଣ୍ଡରେ ଶ୍ରୀକୃଷ୍ଣ ନାମକୁ ଗାଇ ଥାନ ନାଇ ବ୍ରଜ ମଣ୍ଡଳେ ଯାଇ
ଦିବ୍ୟ ଦେହ ଧରି ବାଲ୍ଲକନେ ହେରି ସେବନ ହିବ ସାଉସାଉ ॥
ଧୀର କର ତୋର ଧୈର୍ଯ୍ୟବୁଦ୍ଧି ନନ୍ଦସୁତ ପଦ କର ତୁ ସିଦ୍ଧ
ପତିତମାନଙ୍କ ପାବନ ନିମନ୍ତେ ନାମ ମୁକତି ବଜାର ପାର ।୭।
ଫେରି ବ୍ରଜପୁରେ ପୋଷ୍ଟ ତୁ ପେଟ ବୈଷ୍ଣବ ଚରଣ ଯୁଗଳେ ଲେଟ
ଭ୍ରମିବ ତୁଟି ସେ କୁଟୀକଗଲେ ନାହିଁ ସେ ସ୍ଥଳେ ବିକାର କାର ॥
ମନ ଦୃଢ଼ କରି ଲଗାଅ ଲୟେ ଜୀମୂତ ବରନ ମୋହନ ରୂପେ
ଶ୍ରୀରାସବିହାରୀ କଳବେଣୁଧାରୀ ବୈଜୟନ୍ତୀ ହାର ଯାହାର ହାର ॥
ଲାବଣ୍ୟ ମୁରତି ନନ୍ଦନନ୍ଦନ ବୃଷଭାନୁସୁତା ହୃଦ ଚନ୍ଦନ
ସଂସାର ତାରଣେ ଦୁଷ୍ଟ ନିବାରଣେ ବହୁବିଧ ଅବତାର ତା'ର ॥
ଶରୀରେ ଘୋଟିଛି ସକଳ ରୋଗ ଶାନ୍ତ ହେବା ପାଇଁ ଅଛି ପ୍ରୟୋଗ
ହରି ଚରିତ ପୀୟୂଷକୁ ପିଅ ତ ଏହି ଉପଚାର ସାର ସାର ॥
କ୍ଷୁଦ୍ରମତି ଦ୍ୱିଜ ଗଙ୍ଗାଧର ଋଷି ଷିତିଚନ୍ଦ୍ରା ଛାଡ଼ ହୁଅ ଉଦାସୀ
କ୍ଷମା କୃପାନିଧି ନାମ ଆଶ୍ରେ କଲେ ହେବୁ ଭବ ଅକୂପାର ପାର ॥

———

[ସଇଁତରଣ]

## ଶ୍ରୀବ୍ରଜଯୁବରାଜ ଭଜନ

ଧୀର ସମୀର ବହାଣ ନାମ କରନ୍ତେ ରହୁଥା ।
ରଜନୀ ଦିନ ଭଜନେ ମନ ମାୟାରୁ ଦହୁଥା ॥ ଘୋଷା ।
ବ୍ରଜ ଯୁବରାଜ ନନ୍ଦତନୟ ଲୀଳାରସ ଆଦି ସୁଗୁଣଚୟ ।
ସନ୍ଧି ସକାଳରେ ବସି ନସ୍ଥଳରେ ଜଞ୍ଜାଳ କାଟୁଥା ।୧।
ରସନା ପାମର ବଣସ୍ଥା ରସେ ନାମାମୃତ ପିଅ ରସନା ତୋଷେ ।
ବାସନା ମଜନେ ଦଣ୍ଡେ କ ନମିଷେ ନଠାଇ ରହୁଥା ।୨।
କୃଷ୍ଣ କୃଷ୍ଣ ବୋଲ ଆନନ୍ଦ ଭୋଳେ ଗଡାଗଡ଼ ଦିଅ କୃଷ୍ଣର ଆଳେ
ମଞ୍ଜନା ପ୍ରମଦା ସୁତବନ୍ତ ଗୃହେ ତହିଁରୁ ଫିଟୁଥା ।୩।
ଜୀବନ ଯୌବନ ନୁହଇ ଥିର ଗୁରୁ କୃଷ୍ଣ ପାଦେ ଲଗାଇ ଶିର
ଶ୍ରୀବନ ଦ୍ୱାଦଶ ପରିକ୍ରମା କରି ସାଧୁଙ୍କୁ ଖଟୁଥା ।୪।
ସମୟ ତୋ ଯାଉ କୃଷ୍ଣ କଥାରେ ଏ ଭବୁଁ କୃତାର୍ଥ ହେବୁ ଯଥାରେ
ବୃଥାରେ ପାପ ନ ମୁଣ୍ଡା ତୁ ମଥାରେ ସୁଚିତ୍ତେ ବାଣ୍ଟୁଥା ।୫।
କହଇ ଗଉରଚରଣ ଦ୍ୱିଜ ଷଡାକ୍ଷରମନ୍ତ୍ର ଯେ ମୂଳବୀଜ
କରି ଜପ ଧ୍ୟାନ ଲଭି ଦିବ୍ୟଜ୍ଞାନ ତନୁକୁ ମାଠୁଥା ।୬।

— — —

[ଅଠତରଣ]

## ଶ୍ରୀବ୍ରଜରାଜ ତନୟ ଭଜନ

ଜେ ଜେ ବ୍ରଜରାଜତନୟ କୁଞ୍ଜବନୋଦକାରୀ ।
ଜେ ନବଘନ କାନ୍ତସୁନ୍ଦର ମୋହନ ମୁରଲୀଧାରୀ । ଘୋଷା ।

ନୀଳକଣ୍ଠ ଚନ୍ଦ୍ରଚୂଳ ଗୁଞ୍ଜ ଗୁଞ୍ଜ ଅତି ଶୋଭେ
ଗଣ୍ଡମଣ୍ଡଳେ ମକର କୁଣ୍ଡଳ ଜଗଜ୍ଜନ ମନ ମୋହେ ।୧।
ଭାଲପଟେ ବିରାଜିତ ମୃଗମଦ କସ୍ତୁରୀ ଚିତ୍ର
ବୃଷାରିଧନୁନିନ୍ଦିତ ଭ୍ରୂଯୁଗ ଶ୍ୱେତପଦ୍ମନେତ୍ର ।୨।
ବିମ୍ବାଧରେ ସ୍ଫୁରିତ ହାସମୋହିତ ଭୁବନ ସର୍ବ
ବଦନକାନ୍ତି ଖର୍ବ କରଇ ପର୍ବଶଶୀର ଗର୍ବ ।୩।
ହାରରତନ ହାର ପଦକ କଣ୍ଠଭୂଷଣ ମୋତି
ପୀତବସନ ଜିତବିଦ୍ୟୁତ ଝଲ ଝଲକ ଜ୍ୟୋତି ।୪।
କଙ୍କଣ ମଣିମଣ୍ଡିତକର କଙ୍କିଣୀ କଟି ମାଝେ
ଝୁଂ ଝୁଂ କୃତ ନୂପୁର ନାଦ ପାଦ ଯୁଗଳେ ସାଜେ ।୫।
ମୋହିତ ବ୍ରଜମଣ୍ଡଳ ମହୀ ମଦନମୋହନଭଙ୍ଗୀ
ଦାମ ସୁବଳ ମଧୁମଙ୍ଗଳ ସ୍ତୋକକୃଷ୍ଣ ସଙ୍ଗୀ ।୬।
ଚତୁରାନନ ପଞ୍ଚାନନ ସହସ୍ରାନନ ଆର
ଅଶେଷ ଗୁଣ ଗଣାର୍ଣ୍ଣବ ବର୍ଣ୍ଣିତେ ନୋହେ ପାର ।୭।
ପତିତ ଜନ ପାବନ ଦୀନବନ୍ଧୁ ନାମ ଯେଣୁ
ପାମର ଦ୍ୱିଜ ଗଉରଚରଣ ଆଶ୍ରୟ କରେ ତେଣୁ ।୮।

———

[ଅଣରୂଳଣ]

## ଶ୍ରୀବ୍ରଜରାଜନନ୍ଦନ ଭଜନ

ପାହି ଶ୍ରୀ ବ୍ରଜରାଜ ନନ୍ଦନ ପାହି ନିଖିଳ ବନ୍ଦନ ।
ପାହି ଗୋକୁଳପୂର୍ଣ୍ଣଶଶଧର
ଗୋପୀହୃଦ ତଟଚନ୍ଦନ । ଘୋଷା ।

ଶୁରୁଚନ୍ଦ୍ରକଚୂଳ ମୂଳକୁ ବକୁଳ ମାଳତୀ ଭୂଷଣ
ରଙ୍ଗିମାଧରଭଙ୍ଗୀ ଦେଖି ମୃଦୁଅଙ୍ଗୀ ମନ ତୋଷଣ ।୧।
ନୀଳଜଳଧର କାନ୍ତ ସୁନ୍ଦର ପୀତପଟ କଟୀ ଶୋଭନ
ଯାର ଶ୍ରୀଅଙ୍ଗରେ ଯାର ବୈଜୟନ୍ତୀ ହାର ସୁନ୍ଦର ଲମ୍ବନ ।୨।
କାଳୀ ଅହିଦର୍ପ ଗର୍ବ ଗଞ୍ଜନ ଯାମଳାର୍ଜ୍ଜୁନ ଭଞ୍ଜନ
ବଂଶୀ ବାଦକ ମଦନ ମାଦକ ସର୍ବଜନ ମନରଞ୍ଜନ ।୩।
ଦୁଷ୍ଟ କୌଣପ ନାଶି ହୃଷ୍ଟରେ ଗୋପରାଷ୍ଟ୍ର ବିଖଣ୍ଡନ
ଭୂତନବତଂଶକ ଚିହ୍ନରେ ବ୍ରଜଧରଣୀ ମସ୍ତକ ମଣ୍ଡନ ।୪।
ଗୋପୀଜନମନ ପୂର୍ଣ୍ଣ କଳ୍ପନ ପ୍ରେମ ଭକ୍ତି ସୁସଞ୍ଚନ
ମାତ ମହେଶଅଗତ ରସରେ ସେ ଗତ ସ୍ୱରସରେ ବଞ୍ଚନ ।୫।
ଦାସ ଗଉରର ଆଶ ପୂର୍ଣ୍ଣ କର ବିଷୟ ପାଶ ବିମୋଚନ
ଦୀନବାନ୍ଧବ ଗୋପିକାଧବ ନାଥ ପଙ୍କଜଲୋଚନ ।୬।

---

[ଝୁଲଣ]

## ଶ୍ରୀ ଶ୍ରୀମତୀ ପଦ ଭଜନ

ଭଜ ରେ ମନ ଶ୍ରୀମତୀପଦ ପାଦପଙ୍କଜ ଧାମରେ ।
କୁନ୍ଦନ ନନ୍ଦନ ପ୍ରତିମା ଷଣ୍ଡି ନବୀନଜଳଦ ଶ୍ୟାମରେ ।।ଘୋଷା।।
ଲାଳସୀ ଲୁବ୍ଧ ବିଷୟ ବ୍ୟାଳ ଜାଳ ନାଶନେ ଉପାୟ ଭାଳ
ମାଳ ତୁଳସୀ ଧରଣ ଜପ ତୁ ବାଳମୁକୁନ୍ଦ ନାମରେ ।୧।
ଶ୍ୟାମଳବଦନ ରୁଚିର ଗାତ୍ର ଅମଳ କମଳ ବିଜିତନେତ୍ର ।
ଧ୍ୟାନେ ଦେଖ ତୁ ଜ୍ଞାନ ନୟନେ ପୂର୍ଣ୍ଣ ହୋଇବ କାମ ରେ ।୨।

ନନ୍ଦରସୁତ ମନ୍ଦରଧର କୁନ୍ଦରଦନ ସୁନ୍ଦରବର
ରାମ ଅନୁଜ ନାମକୁ ଧରି ଛେଦ ଏ ଭବଦାମରେ ।୩।
ଦ୍ୱିଜ ଗଉର ଚରଣ ଘଷି ଭବଭବାର୍ଣ୍ଣବେ ନ ଯାଅ ଭାସି
ହବା ବସବବା ଘବ ତୁ ଘବ-ବନୋଦଅ ଘନଶ୍ୟାମରେ ।୪।

---

[ଏକତାଳି]

## ନାମକୀର୍ତ୍ତନ ଭଜନ

ଚିନ୍ତରେ ମନ ! ରଜନୀ ଦିନ
ରାଧେକୃଷ୍ଣ ପଦ ବାରମ୍ବାର ।
ହେଳ ଭଲକରି ବୋଲ ହରି ହରି
ଏହି ଏକା ଏ ସଂସାର ସାର । ଘୋଷା ।
ନେବୁ ଅବା କିସ ଏ ବିଷୟ ବିଷ
ଯାରି କରେ ତାତେ ଛାରଖାର ।
ହରିନାମେ ଗର୍ଜ୍ଜି ଅବିଦ୍ୟାକୁ ବର୍ଜି
ହେବୁ ଭବ-ଅକୂପାର ପାର ।୧।
ପୁତ୍ର ଦାରାଧନ ସ୍ୱପନ ସମାନ
କେହି ନୁହେଁଟି ପ୍ରକାର କାର ।
ଏ ଜଞ୍ଜାଳେ ପଡ଼ି ଯାଅନା ତୁ ମଡ଼ି
ବୁହା ପ୍ରେମଅଶ୍ରୁ ଧାରଧାର ।୨।
କାମ କ୍ରୋଧ ଲୋଭ ମାତ୍ସର୍ଯ୍ୟ ଆରମ୍ଭ
ଛଡ଼ି ଏ ଶତ୍ରୁଙ୍କୁ ମାର ମାର ।
ମିଛ ବଣିକକୁ ସତପ୍ରାପ୍ୟ ମଣୁ
ତୁ ଛୁରେ ତାକୁ ନ ଗାର ଗାର ।୩।

ଅମୃତ ବୋଲି ତୁ                    ଯାହାକୁ ଭାବୁଛୁ,
ସେହିଟି କପଟ ଖାର ଷାର ।
ଗୌରଦ୍ୱିଜ କହି                    ସନ୍ଥସଙ୍ଗେ ରହି
ଗୁରୁ ବଚନକୁ ଆର ଆର ।୪।

———

[ବସନ୍ତ କାଲିଙ୍ଗି]

## ଶ୍ରୀ ହରିଗୁଣ ଭଜନ

( ରାଗ ଶଙ୍କରାଭରଣ ତାଳ ଆଠତାଳୀ )

ମନ ! ମୋ ବଚନ ମାନ
ସବୁ ପରିହରି ହରିଗୁଣ କର ଗାନ । ଘୋଷା ।
ଧନ ପୁତ୍ର ପରିବାର ଅଛନ୍ତି ଯେତେ ।
ମଲାବେଳେ ଜଣେ କେହି ନ ଯିବେ ସଙ୍ଗତେ ।୧।
ଆତ୍ମୀୟ ସ୍ୱଜନେ ଆସି ଉଚ୍ଚେ ଡକା ଛାଡ଼ି ।
କାନ୍ଦି କାନ୍ଦି ବାନ୍ଧିଦେବେ ଛିଣ୍ଡାକନ୍ଥା ପାଡ଼ି ।୨।
କେ ଡରେ ନ ଯିବେ ପାଶେ ରହିବେ ଅଲଗା ।
ମଡାଛୁଆଁ ହୋଇ କେହୁ ହକାଳିବେ ଲୁଗା ।୩।
ଥୋକେ ଲୋକେ ନ ଛୁଇଁବେ ମୁର୍ଦ୍ଦାରଟା ବୋଲି ।
କୋକେଇରେ ଲଦିନେବେ ଶ୍ମଶାନେ ଦୋହଲି ।୪।
ଜାଣି ନପାରୁ ଅଲକ୍ଷି ଅନାଡ଼ି ଥୋବର ।
ସିଞ୍ଚିବେ ତୋପରେ ପାଣି ଗୋଳାଇ ଗୋବର ।

ପୋଡ଼ିବେ ପୋତିବେ ଅବା ଫିଙ୍ଗି ଦେବେ ନେଇ
ସକଳେ କହୁଛନ୍ତି ଦୟା ନ ବାନ୍ଧିବେ କେହି ।୭।
ଗୌରଦ୍ୱିଜ କହେ ଆରେ ମୂଢ଼ ଦୁରାଚାର ।
ସତ କି ମିଛ ଏକଥା ସାଧୁଙ୍କୁ ପଚାର ।୭।

---

[ଚେଷ୍ଟାକଣ]

ଶ୍ରୀହରି ଭଜନ

(ରାଗ ପୂରବୀ ତାଳ ଝୁଲା)

ମୂଢ଼ମନ ! ହରି ଭଜୁଥା ।
ଦୁର୍ଲ୍ଲଭ ଜନମ ନ ହେଉ ବୃଥା । ଘୋଷା ।
ହରଷ ହୋଇଣ ସରସ ରସରେ
ଭରସି ଯାଇ ତୁ ଛଡ଼ାଅ ବ୍ୟଥା ।
ଅମୂଲ୍ୟ ପଦାର୍ଥ ସେ ଯେ ପରମାର୍ଥ
ଅସରନ୍ତି ଧନ ଗଣି କରି ଥା । ୧ ।
ନୋହିବୁ ହରବର ଭକ୍ତବେଶ ଧର
ତୁଣ୍ଡରେ ଉଚ୍ଚାରି ଗୋବିନ୍ଦ କଥା
ଶ୍ରୀ ସୁର ଦେବାର ନାମଧନ ସାର
ବାରବାର କରି ବସି ହେଜୁଥା । ୨ ।
ଖୋଜ ସାଧୁସଙ୍ଗ ଜଳ ତୁନ୍ତି ବେଗ
ଅସାଧୁ ମାନଙ୍କ ସଙ୍ଗରେ ନ ଥା
କୁତର୍କ ଅପଥ ମାର୍ଗକୁ ଛଡ଼ାଇ
ବତାଇ ଦେବେଟି ସେ ରାଗ ପନ୍ଥା । ୩ ।

କୃଷ୍ଣଲୀଳା ଗୁଣ କର ସୁମରଣ
କୃଷ୍ଣ ଚରିତକୁ କର ତୁ ପୋଥା
ଗୌର ଦ୍ୱିଜ ବୋଲେ ଅକାରଣଠାରେ
ନ ଖାଅ ଶମନ ଦୂତଙ୍କ ମୁଥା ।୪।

---

[ଚଉବଳଣ]

## ଶ୍ରୀ ରାମନାମ ଭଜନ

ଭଜ ରେ ମନ ! ରାମ ନାମ
ଆନ ଅପୂନେ ଯାଅ ନା ।
ବ୍ୟର୍ଥ କଥାରୁ ସ୍ୱାର୍ଥ ମଣି ତୁ
ଅର୍ଥ ମଦୁରା ଖାଅ ନା । ଘୋଷା ।
ମାନବ ତନୁ ପୁଣ୍ୟରେ ପାଇ
ଦାନବ ବୁଦ୍ଧି ନ କରୁ ତୁହି
ଯା ନବଘନ କାନ୍ତି ସୁନ୍ଦର
ନିତି ଲକ୍ଷ୍ୟ କର ତା ନାଁ ।୧।
ବନ ଯବନରେ ଏ ଜୀବ ପୂରି
କଳ୍ପ ଆୟୁଷ ନୁହେ ତୋହରି
ଅଳ୍ପକେ ସରି ଯିବୁଟି ଭଜ
ମୁକତି ପସରା ଯାହା ନାଁ ।୨।
କାକର ପରି ଏ ସର୍ବ ବିତ୍ତ
ବୁଝକର ତୁ ଏଥି ନ ଦଅ ଚିତ୍ତ
ଦାରା ତନୟ ସ୍ନେହକୁ ଶାକର
ମଣି ତୁ ଠାକର ଖାଅ ନା ।୩।

ବର୍ଜିତ ହରି ନାମକୁ ବୋଲ
ତର୍କ ଏ ବଡ଼ ସଂସାର ଜାଲ
ହର୍ଷିତ ନୁହ ଅର୍ଜିତନୟେ
ହଜୁରେ ଫଳିତ ପାଆ ନା । ୪ ।
ଦ୍ୱିଜ ଗଉର ଚରଣ ଘଷି
ନ ଲଗା ତୁ ଗଳେ ବିଷୟ ଫାଶି
ଗୃହ ଭାରତରେ ପ୍ରୀତି ନ କର ତୁ
କରଂ ବ୍ରଜପୁରେ ଥାନା । ୫ ।

———

[ପଞ୍ଚଗ୍ରନ୍ଥଣ]

## ଛଟୋକ୍ତି ଭଜନ

ତାଙ୍କୁ କଏ ବୋଲୁଥାଇ ଗୋ! ପରମ ଦୟାଳୁ ହରି ।
କାହ୍ନି ଦେଖି ଅଛ ମାମୁଁଙ୍କୁ ଭଣଜା
ଜୀବନେ ପକାଏ ମାରି । ଘୋଷା ।
କାକ କୋଳେ ପିକ ପାଳିଲ ପର୍ବତେ
ସ୍ନେହଥିଲେ ଗୋପନାରୀ ।
ପୋଷନ୍ତା କାଳକୁ [illegible] ହଲାଇ ଲ
ଚହଟିଲ ମଥୁରାପୁରୀ । ୧ ।
ବସୁଦେବେ [illegible] ଆସି
[illegible]
ଚଣ୍ଡୀ [illegible] ହେଲ
[illegible]

ରାମ ଅଭିରାମ ରୂପ ଦେଖି କାମ
ଲୋଭେ ସୂର୍ପଣଖା ନାରୀ ।
ଆସିଥିଲା ଆଶା— କରି ତାର ନାସା
କାଟି କଲେ ହତଶିରୀ । ୩ ।
ବୈରିଲୋଚନ ବୋଲି ଏକ ବୀର ଥିଲା
ହେଲେ ତାର ମନୋହାରୀ ।
କୂଟ କରି ଚୂଟି ଉପାଡ଼ି ତାହାକୁ
କେଶକାଟ ଦେଖି ମାରି । ୪ ।
କାନନ ମଧ୍ୟରୁ ଜନକ ସୁତାକୁ
ରାବଣ ଯେ ନେଲା ହରି ।
ବନା ଦୋଷେ ସିନ୍ଧୁ ବାନ୍ଧ ପକାଇଲେ
ବାଲୀ କୁ ବିନାଶ କରି । ୫ ।
ବଳୀ ମନ୍ଦିରକୁ ଛଳ ବିଜେକଲେ
ବାମନ ମୂରତି ଧରି ।
ଭିକାରୀ ହୋଇଣ ଧିକାରି ଗୃପିଲେ
ରଖିଲେ ପାତାଳପୁରୀ । ୬ ।
ଜଳନ୍ଧର ବୀର ଶାଳକ ତାଙ୍କର
ସବେ ରହି ତାର ପୁରୀ ।
ହରି ତା ସଷ୍ଟିକ ପୁଣି ତା ପତିକ
ହର କରେ ବଧ କରି । ୭ ।
ପାଣ୍ଡବେ ତାଙ୍କର ସୁହୃଦ ବାନ୍ଧବ
ଜାଣନ୍ତି ଏ ତିନପୁରୀ ।
ଖିମ ସୁତ ବେଳି— ବଳୀକି ମାଇଲେ
କେଉଁ ଅବଗୁଣ ଧରି । ୮ ।

ପୂଷ ହତ ଶୁଣି ଗୁରୁ ଦ୍ରୋଣ ପୁଣି
ପଡିଥିଲେ ଜ୍ଞାନ ହାରି ।
ମାରି ବୋଲି ଧୃଷ୍ଟ ଦ୍ୟୁମନଙ୍କୁ ପର
ଦେଖି ଦେଲେ ଆଖି ଠାରି । ୯ ।
ସ୍ୱସ ମଣ୍ଡଳରୁ ବ୍ରଜ ଦେଖାଙ୍କି ଯେ
ଯେନ ଗଲେ ଭୁଜ ଧରି ।
ଏକା କରି ଗିରି ଚେକା ଗୁଡ଼ି ଗଲେ
କନ୍ଧରୁ ପକାଇ କରି । ୧୦ ।
ଶୁଣ୍ଡଠାରେ ବନ୍ଧ ହୋଇ କୁଶମୂନ
ଭୂଷି ଦେଲେ ସ୍ଥିର କରି ।
ବ୍ରାହ୍ମଣଙ୍କୁ କଣା କଲେ କାହିଁପାଇଁ
କେଉଁ ଅବଗୁଣ ଧରି । ୧୧ ।
ଯେଉଁ ଗୋରୁହତ୍ୟା ଈଶ୍ୱରେ ଲଗିଲା
ଗଲେ ୦ କୈଳାସୁଁ ବାହାରି ।
କଉତୁକେ ଷଣ୍ଢ— ସୁରଙ୍କୁ ମାଇଲେ
ପାପପୁଣ୍ୟ ନ ବିଚାରି । ୧୨ ।
ଅନ୍ୟେ ଗୋପୀମାନେ ଯମୁନାରେ ଯେବେ
କରୁଥିଲେ ଜଳକେଳି ।
ବସନ ଚୋରାଇ ବୃକ୍ଷରେ ବାନ୍ଧିଲେ
ମହତ ନେଲେ ଆମ୍ଭରି । ୧୩ ।
ଗଉର ଚରଣ ବୋଲେ ଗୋପୀଗଣ!
ହରିଙ୍କ ନିନ୍ଦା ନ କରି ।
ଜଗତ ଯାକର ପ୍ରଭୁ ସେ ଅଟନ୍ତି
ମହାମହିମା ତାଙ୍କରି । ୧୪ ।

———

[ଛପ୍ପାଳଣ]

## ଭଗବତ ଭଜନ ମାଳୀ

ଭଗବତ ଭଜନ ମାଳୀ
ଅହରହ କର ଆ ତୁ ସଙ୍ଗାଳି ।ଘୋଷା।
ରବସୁତ ଦଣ୍ଡରୁ ଯନ୍ଦ
ବାହ୍ନ ଲଭବୁ ରେ ଦୁର୍ବୁଦ୍ଧି
ଅବରତରେ ତୁ ରବପ୍ରିୟାନେତ୍ର
ଗୁଣ ଶୁଣ ସବ ଜଞ୍ଜାଳ ଟାଳ ।୧।
ଧାଇ ଧାଇ କୃଷ୍ଣମୂର୍ତ୍ତିକ
ଭ୍ୟାଇ ମହୋତ୍ସବ ସ୍ଥଳକ
ଚ୍ୟାଇଁ ଉଠ ଆଜ ମୋହ ନଦ୍ରାରେ ତୁ
ଧାର ମୂଢ଼ ଗୁରୁବଚନ ପାଳ ।୨।
ଅସମର୍ଥ ନୁହ ଏଥିକ
ଧର ସାଧୁଜନ ପୋଥିକ
ଦଶ ଦଶା ମାଡ଼ ଆସୁଛି ଟି ତୋର
ସେ କଷଣ ପାରବୁ କ ସମ୍ଭାଳ ।୩।
ଆନ ବଷୟରେ ନ ରମି
ପାନ କର ପୀୟୂଷ ସ୍ୱାମି
ଗାନ କର ସଦା ରାଧା ହର ପଦ
ଆନନ୍ଦାଶ୍ରୁମାରେ ନେତ୍ର ପଖାଳ ।୪।
ମିଛ ବଣିଜକୁ ବରଜ
ଇଚ୍ଛା ଶୁଭ ସୁଖ ଅରଜ
ଶ୍ରୀ ଛନ୍ଦଣୀପାଦ— ପଙ୍କଜେ ମିଳନ୍ଦ
ହୁଅ ତୁ ଶ୍ରୀବନଜ ଚରଣ ଭୃଙ୍ଗ ।୫।

ଭ୍ରାନ୍ତ ନୋହି ଶ୍ରାନ୍ତ ଉପେକ୍ଷି
ପ୍ରାନ୍ତକୁ କି ହୋଇବୁ ଦେଖି
ଦାନ୍ତ ମାନେ ନେବୁ    ନାହିଁ ତ ସେଥିରୁ
ସଞ୍ଚିତୁ ଯା କ୍ରମେ ସଞ୍ଜ ସକାଳ । ୬ ।
ଧର୍ମ କର୍ମେ ଲଗାଇ ସ୍ନେହ
ଇଷ୍ଟଦେବେ ବଳି ଦେ ଦେହ
ଧର୍ମବୁଦ୍ଧା ଯେଉଁ    ଅନର୍ଥ୍ୟ ସମ୍ପତ୍ତି
ବିତରଇ ଦେ ତୁ ନ ହୋଇ ଭ୍ରାଳ । ୭ ।
ଦ୍ୱିଜ ଗୌର ଚରଣ କହି
ନିଶ୍ଚିନ୍ତରେ ଶ୍ରୀ ବ୍ରଜେ ରହି
ଉଦର ଖଣ୍ଡିକ    ଭରଣ ଲାଗି ତୁ
ମାଗ ମାଧୁକରୀ ମାରଣ ତାଳ । ୮ ।

———

[ସତର୍କଲଶ]

## ଭଜଗୋବିନ୍ଦ ଭଜନ

ଭଜ ଗୋବିନ୍ଦ ସୁନ୍ଦର ଗୋବିନ୍ଦ ନିଅ ଗୋବିନ୍ଦ ନାମକୁ ରେ ।
ରଜନୀ ଦିନ କର ଧ୍ୟାନ ଅଞ୍ଜନ ବ ଘନଶ୍ୟାମକୁ ରେ । ଘୋଷା ।
ଶ୍ରୀନାମ ମାଦକ ସେବେଲେ ମୋହ ମୂର୍ଚ୍ଛା
ହେଉଥାଅ ଯାମ ଯାମକୁ ରେ
ମାନସୀକେ ସେବୁଥାଅ ନିରନ୍ତରେ
ଶ୍ରୀବୃନ୍ଦାବିପିନକାମକୁ ରେ । ୧ ।
ଆନ ବିଷୟରେ ନିରପି ନମିଷେ
ରସ ତୁ ବ୍ରଜ ଆଶ୍ରମକୁ ରେ

ଭୁର୍ଣ୍ଣରେ ମାଳା ଚଢ଼ାଇ ଆପଣେ
ପୂର୍ଣ୍ଣକର ମନସ୍କାମକୁ ରେ । ୨ ।
ସଖୀଙ୍କ ସର୍ଦ୍ଦିମା ପଣକୁ ଆଦର
ଆଗ୍ରେକର ଗୁରୁ ନାମକୁ ରେ
ମାଳକ ମାଳକଆଣୀଙ୍କି ଦେଖିବୁ
ବ୍ରଜ ଯା ବୁ ନନ୍ଦ ଧାମକୁ ରେ । ୩ ।
ପରକ୍ରମା କର ଯାବଟ ବର୍ଷାଣ
ଗୋବର୍ଦ୍ଧନ ନନ୍ଦଗ୍ରାମକୁ ରେ
ଗୌର ଦ୍ୱିଜ ବୋଲେ କଳ୍ପ ନୀପ ମୂଳେ
ନଷ୍ଟକ୍ରେ ନଅ ବଗ୍ରାମକୁ ରେ । ୪ ।

---

[ଅଠରକଳଣ]

## ରାଧେକୃଷ୍ଣ ଭଜନ

ରାଧେ କୃଷ୍ଣ ରାଧେ କୃଷ୍ଣ ରାଧେ କୃଷ୍ଣ ରଟରେ
ଦୁରୁଜନ ସଙ୍ଗ ମୁଞ୍ଚ ଗୁରୁପାଦେ ଖଟରେ । ଘୋଷା ।
କେତେ ଦିନ ରହିବ ଏ ମାଟିପିଣ୍ଡ ଘଟରେ
ଜଞ୍ଜାଳ ଜାଲରେ ପଡ଼ ବୁଢ଼ ନଟପଟରେ ।୧।
ଧନ ଦାର ସୁତ ଦେଖି ମନ କରୁ ମୋଟରେ
ମୋର ମୋର ହୋଇ ବୁଡ଼ୁଅଛୁ ଧର୍ମବାଟରେ ।୨।
ଯମୁନାପୁଳନ କେଶୀଘାଟ ବଂଶୀବଟରେ
ତ୍ରିଭଙ୍ଗ ଭଙ୍ଗିମାଛନ୍ଦେ ଉଭା ନନ୍ଦବଟରେ ।୩।

ବ୍ରହ୍ମ ଗୋପାଳମୂରତ ଶ୍ରୀକିଶୋର ନଟରେ
ଦର୍ଶନେ କୃତାର୍ଥ ହୁଅ ସଖୀ ବାମ ପଟରେ ।୪।
ହରେ କୃଷ୍ଣ ମହାମନ୍ତ୍ର ଅନୁକ୍ଷଣେ ରଟରେ
ରାମନାମ ଖଣ୍ଡା କର ପାପତାପ କାଟରେ ।୫।
ଭାବେ ଭାଗବତ ବାଣୀ ଶୁଣ କର୍ଣ୍ଣପୁଟରେ
ଦାସ ଭଣେ ଦ୍ୱିଜ ଗୌର ଅବଧୂତ ରୂଟରେ ।୬।

———

[ଅଶଗୁଣ]

## ଗୋବର୍ଦ୍ଧନଗୋପାଳ ଭଜନ

( ରାଗ ବଙ୍ଗଳାଶ୍ରୀ—ତାଳ ଝୁଲା )

[ଭଜରେ ମନ ରାମନାମ ଆନଅମୃତେ ପାଆ ନା—ବୃତ୍ତ]

ଭଜ ରେ ମନ ! ଗୋବର୍ଦ୍ଧନ ଗୋପାଳ ଚନ୍ଦ୍ରରେ ମନ ଦାଣ୍ଡି
ଅକ୍ରୂର ଉଦ୍ଧବ ଧ୍ରୁବ ପ୍ରହ୍ଲାଦ ନାମ ଧରିଗଲେ ତରି କି ।ଘୋଷା।
ମାରିଲେ କଂସକ ତାରିଲେ କଂସକ ସୁଦାମା ହୃଦୟେ ଭରିକି
ମାରିଲେ ନାଗକ ତାରିଲେ ନାଗକ ହୋଇ କଦମକେଶରୀ କି ।୧।
ମାରିଲେ ବାଳକ ତାରିଲେ ବାଳୀକ ସୁଗ୍ରୀବଦର୍ପଣ ଆଚରିକି
ମାରିଲେ ହରିଣୀ ତାରିଲେ ହରିଣୀ ଦୁଇଗୁଣ ସମ ସରିକି ।୨।
ଭକ୍ଷିଲେ ଅନଳ ରକ୍ଷିଲେ ଗୋକୁଳ ଗୋବର୍ଦ୍ଧନ ଗିରି ଧରିକି
ଚାଖିଲେ ଅଇଁଠା ଫଳ ମିଠା ମିଠା ସୁଗତି ଦେଲେ ଶବରୀ କି ।୩।
ମାରଣ ତାରଣ ଜୀବ ଉଦ୍ଧାରଣ ଅଛି କେ ବା ତାଙ୍କ ପରି କି
ଗଉର ଚରଣ ହ ଜର ଧାରଣ ରକ୍ଷଣେ ହେବେ ସେ ତରି କି ।୪।

———

[ପଚାଶ]

## କୃଷ୍ଣକଥା ଭଜନ

ରାଗ ଭାଟିଆର—ଏକତାଳୀ

ଆରେ ସୁରସନା ! କୃଷ୍ଣ କଥା ବିନେ ଆନେ ତୁ ରସ ନା । ଘୋଷା
ଅନବରତରେ ହୋଇ ତୋଷ ଅକୈତବ ଭାବ ନିତ୍ୟ ଘୋଷ
ନନ୍ଦନନ୍ଦନାନନ୍ଦଇନ୍ଦୀବରଚନ୍ଦ୍ର କନ୍ଦର୍ପସୁନ୍ଦରଗୁଣ ଘୋଷ ।୧।
ଅଖିଳ ରସ ଅମୃତ ସିନ୍ଧୁ, ବ୍ରଜ ବଧୂଜନ ପ୍ରାଣବନ୍ଧୁ
ଶ୍ରୀମଧୁସୂଦନ ମଧୁମିଶ୍ର ନାମ ମଧୁକୁ ଚୂଷ ତୁ ବିନ୍ଦୁ ବିନ୍ଦୁ ।୨।
ଆଳସୀ ନ ହୋଇ ତୁ ନିମିଷେ ଲାଳସୀ ହୁଅ ଏ ସୁଧାରସେ
ମାଳଶ୍ରୀ କରଣ ହରେକୃଷ୍ଣ ନାମ କାଳ ବଞ୍ଚଥାଅ ନିଶିଦିବସେ ।୩।
ସୌରଭ କେମନ୍ତ ନାମ ପଣା ଆଜସର ତୋତେ ନୋହେ ଜଣା
ଗୌରଦ୍ୱିଜବୋଲେ ଗୌରବପ୍ରତିଷ୍ଠା ଛାଡ଼ିଲେ ଅନୁଭବିବୁ ସିନା ।

———

[ଏକାବନ]

## ଶ୍ରୀକୃଷ୍ଣସେବା ଲାଳସା

ସତେ କି ଏକ ଦିନମା ବ୍ରଜପୁରେ ମୁଁ ବଞ୍ଚିବି ।
କୃଷ୍ଣ ଶ୍ରୀମୁଖକୁ ଚାହିଁ କୋଟିଦୁଃଖ ମୁଞ୍ଚିବି ।ଘୋଷା।
ପ୍ରଥମେ ଭେଟ ସମୟେ ପଡ଼ିବି ଅମ୍ବୁଜପାଏ ।
ଉଠି ଶିରେ ଯୋଡ଼ି କର ଦିବ୍ୟ ସ୍ତୁତି ରଞ୍ଚିବି ।୧।
ତନୁ ହେବ ରୋମୋଦ୍‌ଗମ ପୁଲକେ ପୂରିବ ହେମ ।
ନେତ୍ରନୀର ସତେ ମୋର ଉରପରେ ସିଞ୍ଚିବି ।୨।

ପୁଣ ଚରଣେ ପଡ଼ିବ ଆନନ୍ଦ ହୋଇ ଗଡ଼ିବ ।
ପାଦ ପଦ୍ମ ଚିହ୍ନଧୂଳି ମସ୍ତକରେ ବାନ୍ଧିବ । ୩ ।
ମଥୁରା ଯିବାକୁ ସଜ ହେଲାବେଳେ ଦେବରାଜ ।
ତଡ଼ପଲାଗି କରାଇ ପିଛାଫେରାଇ କୁନ୍ଦିବ । ୪ ।
ଗୌରଦ୍ୱିଜବୋଲେ ଯେବେ ରଥ ବାଜକଲବେଳେ
ଭ୍ରମର ଧାରଣ କରି ଧୀରେ ଧୀରେ ବାନ୍ଧିବ । ୫ ।

——— ——

[ବାଉଳ]

## ଯୁଗଳସେବା ଲାଳସା

(ନ ଚଳିବ ମୂର୍ଚ୍ଛା ଧର—ବୃତ୍ତ)

ମନେ ହେଉ ନାହିଁ ପରତେ ।
ଏମନ୍ତ ସୁଭାଗ୍ୟ ଘଟିବ ମୋତେ । ଘୋଷା ।
କୁଞ୍ଜ ସାମନ୍ତାଣୀଙ୍କ ଲାଗି ନିଶାନ୍ତରୁ ଉଠିବ ଜାଗି
ମଙ୍ଗଳ ଆଳତି କାଳେ ଦରଶନ
କରିବ ଦୁହିଙ୍କି ଏ ପାପ ନେତେ । ୧ ।
ଲୁଣ୍ଡିବିଦ୍ୟା ସଖୀଙ୍କ ସହିତେ ଗୁଣଚୂଡ଼ା-ମଞ୍ଜରୀ ମତେ
ମୋ ଶ୍ରୀଗୁରୁରୂପା ସଙ୍ଗିମାନଙ୍କ କୃପା
ଅପାଙ୍ଗେ ସୁସେବା ପାଇବ ସତେ । ୨ ।
ମହା ପଦ୍ମ ରତ୍ନ-ସଦନରେ ସେ ସପ୍ତମ ଦଳମଧରେ
ଧନ୍ୟାମଞ୍ଜରୀଙ୍କ ବାମେ ରହି ତାଙ୍କ
ଆଦେଶ ଖଟିବ କୁଞ୍ଜ ପୁରତେ ।୩।

ଦ୍ୱିଜ ଗୌର ଚରଣ କହେ ସିଦ୍ଧ ହେବ ପ୍ରାପ୍ତିର ସ୍ପନ୍ଦେ
ମାନସିକ ଭାବେ ଆଭଙ୍ଗ-ସ୍ୱଭାବେ
ଅମ୍ଭାଭମାଣ ମୁଁ ଫଗ ସନ୍ତତେ । ୪ ।

———

[ତେପନ]

## ଯୁଗଳ ଚରଣ ଭଜନ

( ଶିବ ରେ ଶିବ ଏ ଜୀବ ଦିନେ ଗୃଲଶିବ ରେ ବୃତ୍ତ )

ଭଜଭଜ ଆରେ ମନ ଯୁଗଳ ଚରଣକୁ
ନରହିବ ତୋରଭୟ ଆଉ ଜନୁସଣକୁ । ଘୋଷା ।
ଛାଡ଼ ଏ ଘରଦୁଆର ଫଳା ବନ୍ଧୁବର୍ଗଙ୍କୁ ।
କାହିଁ କାଟୁଅଛୁ ଦିନ ଏଥି ଅକାରଣକୁ । ୧ ।
ଦେଖି ନାହୁଁ କି ତୋ ଆଗେ କେତେକେତେ ଜଣଙ୍କୁ
କେ କସ ମୁଣ୍ଡାଇ ନେଲେ ଧନ ବଡ଼ପଣକୁ ।୨।
ବିଶ୍ୱାସ ତୁ ନ ଯା ଦାରାପୁତ୍ର ବନ୍ଧୁ ଗଣଙ୍କୁ ।
ରହିଛନ୍ତି ସେ ଅନାଇଁ ତୋହର ମରଣକୁ ।୩।
ଛଡ଼ାଇବା ପାଇଁ ମହାପାତକଭାରଣକୁ ।
କି ଲକ୍ଷେ ତୋଷିବୁ ଅବା ଯମର କରଣଙ୍କୁ ।୪।
ମୂର୍ଖ ମୂର୍ଖ ରେ ଅନାଡ଼ ! ମନ୍ଦ-ଆଚରଣକୁ ।
ନ ପକା ଜଞ୍ଜାଳଜାଲେ ଗଉର ଚରଣକୁ ।୫।

———

[ଚଉବନ]

## ରାଧେଗୋବିନ୍ଦ ଭଜନ

ରାଧେ ଗୋବିନ୍ଦ ଭଜ        ରାଧେ ଗୋବିନ୍ଦ ଭଜ
ନନ୍ଦନନ୍ଦନ  ବଂଶୀବଦନ ବୃନ୍ଦାବନଚନ୍ଦ୍ର ଭଜ । ଘୋଷା ।

ମାୟାମୋହ ହିଂସା କାମ କ୍ରୋଧ ଲୋଭ
    ଏହାଙ୍କ ସଙ୍ଗରେ କପାଇଁ ମଜ
ହରେକୃଷ୍ଣ ରାମ ଅମୃତ ସାଗର
    ସାଧୁଜନ ପାଶେ ପଚାର ବୁଝ ।୧।

କେଶବ କଂସାରି ରାମ ହଳଧାରି
    କଂସ ନାଶି କଲେ କୁବୁଜା ଭଜ
କୃଷ୍ଣ ନାରାୟଣ ନୃସିଂହ ବାମନ
    ବଳିଶିରେ ଦେଲ ଯେ ପାଦରଜ ।୨।

ଦୟୁଣାଭୂଷଣ ୍ ନାଶିବେ କଷଣ
    ଦୃଢ଼େ ଭଜୁଥିବୁ ପାଦ-ସରୋଜ
ଶ୍ରୀବୃନ୍ଦାବନରେ ନାନାରଙ୍ଗେ କେଳି
    ଗୋପ ସୁତ ସଙ୍ଗେ ବରଜରାଜ ।୩।

ହରଣୀ ଦ୍ରୁପଦି ହରିଲେ ଶ୍ରୀପତି
    ଗ୍ରାହା ମାରି ତାରି ରଖିଲେ ଗଜ
ଏବେ ନୀଳାଚଳେ ରହି ଜଗନ୍ନାଥେ
    ଭକ୍ତପାଇଁ ଟେକ ଅଚ୍ଛନ୍ତି ଭୁଜ ।୪।

ଅଚ୍ୟୁତ ମୁକୁନ୍ଦ ମାଧବ ମୁରାରି
    ପତିତପାବନ    ଗରୁଡ଼ଧ୍ୱଜ

ପ୍ରହ୍ଲାଦ ଛଳେ ସ୍ତମ୍ଭରୁ ବାହାରି
ନଖେ ବିଦାରିଲେ ହିରଣ୍ୟରାଜ ।୫।
ନରୋତ୍ତମ ନରହରି ହରେକୃଷ୍ଣ
ଭଜ ତୁ ଅଭୟ ପାଦ ପଙ୍କଜ
ଯେଉଁ ପାଦପଦ୍ମେ କାଳୀକ ଦଳିଲେ
ହୋଇଣ ମଦନ ମୋହନ ସଜ ।୬।
ଇନ୍ଦ୍ର ବିବାଦରେ ମନ୍ଦର ଧଇଲେ
ହାରି ସୁରପତି ପାଇଲା ଲାଜ
ଗଉର ଚରଣ ଶରଣ ମାଗଇ
କାରଣ କରିବେ ଦେବାଧିରାଜ ।୭।

---

[ପଞ୍ଚାବନ]

## ବୈରାଗ୍ୟନିଧି ଭଜନ

[ ପତିତ ପାବନବାନା ଆଜ କେତେ ବେଳକୁ– ବୃତ୍ତରେ ]

ଭୁଲାଇ ତୁ ଘୁଁ ଘୁଁ ଚଟକଣା ଦେଲୁ ତ
ଗୁଣ୍ଡରେ ଅଚେତ ହେଲେ କୃଷ୍ଣ ନ ବୋଲିଲୁ ତ । ଘୋଷା ।
ଦାରା ତନୟଙ୍କ ସ୍ନେହେ ବୃଥା ଠାରେ ମାୟାମୋହେ
ବିଷମ ଜଞ୍ଜାଳେ ପଡ଼ି ଦିନ କାଳ ନେଲୁ ତ ।୧।
ଦାମ୍ଭିକ କୃପଣପଣେ ବଡମା ଗର୍ବେ ଆପଣେ
ଶ୍ରୀଗୁରୁ ପ୍ରଦତ୍ତ ବୀଜମନ୍ତ୍ର ତେଜି ଦେଲୁ ତ ।୨।
ଏକ ଡୋଳର ତୁ କାହାର ଧନେ ହୋଇବୁ ବାହାର
ଦଣ୍ଡଧର ଦଣ୍ଡୁ ତ୍ରାହି ହେବା ନ ଚିନ୍ତିଲୁ ତ ।୩।

ଆଣି ଦେଖାଇ ଦେଉ ଯା ଠାଣିରୁ ପାଇ କ ମଜା
ଜାଣି ଜାଣି ସନ୍ଥଜନ ବାଣୀ ଦୂରେ ଠେଲୁ ତ ।୪।
ଗୌର ଦ୍ୱିଜ ବୋଲେ ମନ ! ହରିଅନା ମୂଳଧନ
ସମ୍ପାଦ କର ଯତନ କହେଁ ଏତେବେଳୁଁ ତ ।୫।

———

[ଛତେନ]

## ବୈରାଗ୍ୟ ସୁଧା ଭଜନ

ରାଗ ଶଙ୍କରାଭରଣ । ତାଳ ଆଠତାଳୀ
[ଭଜ ରାଧେ କୃଷ୍ଣ ବୋଲ—ବୃତ୍ତ]

ମନ ତୁ ଏଡ଼େ ଅବୋଧ !
ସୁପଥ ଛାଡ଼ି କୁପଥେ ବଳାଇଲୁ ପଧ । ଘୋଷା ।
ବନ୍ଦୀ ହୋଇ ଅକାରଣେ ମାୟାମୋହ ଘରେ
କାହିଁକି ଆସିଛୁ ଭବେ ନ ଚିନ୍ତିଲୁ ଥରେ ।୧।
ଇଚ୍ଛାରେ ପାତକ ପୁଞ୍ଜ ସଦା ଚୁଣ୍ଡପାଳୁ
ପ୍ରବୋଧ ପ୍ରଦୀପ ହୃଦ ମନ୍ଦିରେ ନ ଜାଳୁ ।୨।
ଧନ ମଦେ ମତ୍ତ ହୋଇ ସବୁ ବୋଲୁ ମୋର
ଏ ବଡ଼ାଇ ଛଡ଼ାଇବ କାଳଫାଶ [illegible] ।୩।
ମିଛବଣିକରେ ମଣି [illegible] [illegible] ବଣା
ଅନ୍ତକାଳେ ଜଣାଯିବ [illegible] [illegible] ।୪।
ଥିବୁ କି କାଳ[illegible] [illegible] [illegible]
ମଶାଣି ଭୂଇଁରେ [illegible] [illegible] [illegible] ।୫।

ବାହାର ଚଢ଼ିବ ମଲ୍ଲବେଳେ ସବୁ ମଜା
ଗୋଡ଼ାଇ ନସିବେ ସଙ୍ଗେ ତୋ ପୁତ୍ର ଭାରଜା ।୭।
ଗୌର ଦ୍ୱିଜ ବୋଲେ ଭଲ ଗତି ଥିଲେ ତୋର
ସବୁ ଛାଡ଼ି ହରେକୃଷ୍ଣ ନାମ କର ସାର ।୭।

---

[ଶତାବନ]

## ନାମାମୃତ ସଙ୍ଖାଳ ଭଜନ

(ତାଳ ଆଠତାଳୀ)

ଚିନ୍ତାମଣି ବେଣୁପାଣି ନାମକୁ ଚିନ୍ତରେ ମନ !
ଧାମ-ଗୋଲକ ପାଇବୁ ବାମ ନୋହିବ ଶମନ । ଘୋଷା ।
ଶ୍ୟାମ ଅଭିରାମତନୁ କାମ ମୋହନ ଅତନୁ
ରାମ ଅନୁଜଙ୍କ ବନୁ ଗତି ନାହିଁ ତ୍ରିଭୁବନ ।୧।
ଦାମ ସୁବଳ ସଙ୍ଗିଆ ରଙ୍ଗିଆ ଭ୍ରୂଭଙ୍ଗିଆ
ବାମନେତ୍ର ଅପାଙ୍ଗିଆ କାମନା କରିବେ ପୂର୍ଣ୍ଣ ।୨।
ଯାମଳା ଭଞ୍ଜନକାରୀ ସର୍ବ ପାପ ତାପହାରୀ
ରାମ ନିକୁଞ୍ଜ ବିହାରୀ ଧାନ ଗୃତକର ଧନ ।୩।
ତାମରସ ପଦଯୁଗ ତହିଁ ହୁଅ ମତ୍ତଭୃଙ୍ଗ
ଚାମର ଗଉର ଦ୍ୱିଜ ବୋଲେ ତୁ ହୋଇବୁ ଧନ୍ୟ ।୪।

---

[ଅଠାବନ]

## ମାନଉଦ୍ଧାରଣ ଭଜନ

ଯିବୁ ଯେବେ ଆର ପାରକ
ମାନ ମୋର ବୋଲ ଭଜ ହରିକି
ଆନରେ ନ ରସି ଧ୍ୟାନ କର ବସି
ମାନଉଦ୍ଧାରଣ ଦାନବାରିଙ୍କି । ଘୋଷା ।
ଜ୍ଞାନଯୋଗ ସାଧିବୁ କାହିଁ ଦାନ ଧର୍ମେ ପାରିବୁ ନାହିଁ
ଥାନ କର ବ୍ରଜକାନନରେ ଯାଇ
ତାନମାନେ କରତାଳ ମାରିକ ।୧।
ଶ୍ଵାନ ବୃତ୍ତି ଧରି ତୁ ଆପେ ଆନନ୍ଦରେ ଭ୍ରମୁଥା ଗୋପେ
ହା ନନ୍ଦନନ୍ଦନ ରାଧେ ରାଧେ ବୋଲି
ଗାନ କର ଚିନ୍ତ ବ୍ରଜନାରୀଙ୍କି ।୨।
ନାନାସ୍ଥାନ ନୃତ୍ୟ ବୃନ୍ଦାରେ କାନ ଡେର କୃଷ୍ଣକଥାରେ
ଯା ନବରସରେ ମଜ୍ଜିଛନ୍ତି ସନ୍ଥେ
ତା ନ ଆଦରୁଛୁ କ ବତ୍ସର କ ।୩।
ସ୍ନାନ ସାର ଶ୍ରୀକୁଣ୍ଡମାରେ ଦାନ ଧାରୀ ଧୀର ସମୀରେ
ସାନନ୍ଦେ ବହର କହେ ଦ୍ଵିଜ ଗୌର
ପାନ କର ଶ୍ରୀ ଯମୁନାବାରିକ ।୪।

---

[ଅଣଷଠି]

## ବ୍ରଜବାସ ଲାଳସା

ସତେ ମୋତେ ଗୁରୁଙ୍କର ଆଜ୍ଞା ହେବ କୃଷ୍ଣକଥାରେ ମୁଁ ରସିବ ।
ଶ୍ରୀରାଧା ଗୋବିନ୍ଦ ବୃନ୍ଦାବନଚନ୍ଦ୍ର ନାମ ନିରନ୍ତରେ ଘୋଷିବ ।ଘୋଷା

ଦାସସୂତ ବଲେ ଚଉ ନ ରସିବ କ କ ପର ଚହୁଁ ଖସିବ
ଚନ୍ତା ଦୂର କର ଅଚନ୍ତା ହୋଇ ମୁଁ ଚନ୍ତାମଣିସ୍ଥଳେ ପଶିବ ।୧।
ସନ୍ତତ ଭକ୍ତଙ୍କ ସଙ୍ଗେ ଅନୁରକ୍ତ ଆଜ୍ଞା ମାଗି ପାଶେ ବସିବ
ତାଙ୍କ ଶ୍ରୀପଦ୍ମରହେମାବ୍ରଜକୁ ମୋର ଉରକଣ୍ଠିରେ କଷିବ ।୨।
ଦ୍ୱାରେ ଦ୍ୱାରେ ଫେରି ଭିକ୍ଷା ମାଧୁକରୀ ମାଗି ଏ ପେଟକୁ ପୋଷିବ
ମାରି କରତାଳ ନାଚି ଢଳ ଢଳ ସେମାନଙ୍କ ମନ ତୋଷିବ ।୩।
ରାଧାକୁଣ୍ଡ ଜଳ ଜମ୍ବାଲକୁ ଗୋଳ ଉର ଉତ୍ତମାଙ୍ଗେ ଘଷିବ
ଯେତେ ଥିବ ସଂସାର ଦୁର୍ବାସନା ତେବେବେଳେ ସିନା ନାଶିବ ।୪।
ବୈଷ୍ଣବ ପଦ୍ମର ଧୌତ ନୀର ମୋର ତୃଷ୍ଣା ଦୂରକରି ଶୋଷିବ
ଆନନ୍ଦରେ ଭୋଳହୋଇ ବେନଡୋଳ କପାଳରେ ନେଇ ଖୋଷିବ ॥
ଶ୍ରୀହରିସନ୍ଦର ଛାପା ନାମାକ୍ଷର ଚଉ ବାହୁ ଉରେ ଭୂଷିବ
ଶ୍ରୀନନ୍ଦନନ୍ଦନ ପଦଦ୍ୱନ୍ଦ ଧ୍ୟାନ କରି ପ୍ରେମାନନ୍ଦେ ଭାସିବ ।୬।
ଗୌରଦ୍ୱଜ ଭଣେ ସାଧୁ କୃପାବଶେ ଯେବେ ସେ ଗୋଷ୍ଠୀରେ ମିଶିବ
ତେବେ ସେ ନକର ବ୍ରଜବାସୀଙ୍କର କଙ୍କର ପଦବୀ ବଶିବ ।୭।

---

[ଷାଠିଏ]

## ବୃନ୍ଦାବନ ବାସ ଲାଳସା

[ବ୍ୟଥିତ କଥିତ ଧନୀ ଗିର ବୃତ୍ତେ]

କର ଅନୁକମ୍ପା ବନଦେବି
ଶ୍ରୀ ବନେଶ୍ୱରୀ ସେବକୀ ହେବି
ସତେ ନକ ମୁହିଁ ବୃନ୍ଦାବନେ ଯାଇ
ଶ୍ରୀକୃଷ୍ଣେ ଏ ମଥା ଟେକାଇବି
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳ ପଦ ସେବି ।୧।

ଖର୍ଜୁର ଭାଣ୍ଡୀର ଭଦ୍ର ବନେ
ବିହରିବ ସଙ୍ଗେ ମୋଦେ ମନେ
ନିକୁଞ୍ଜେ ମଦନମୋହନ ଦର୍ଶନେ
ଧନ୍ୟ ହେବ ସେହି ନିତ୍ୟ ଧନେ.
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳ ପଦ ସେବି ।୨।
ସିଦ୍ଧ ଗିରିରାଜ ଗୋବର୍ଦ୍ଧନ
ସୁଖାନନ୍ଦେ କରି ପ୍ରଦକ୍ଷିଣ
ଯାବଟ ବର୍ଷାଣ ନନ୍ଦଗ୍ରାମ ସ୍ଥାନ
ବିଲୋକିବ ଗୋପ ପୁରୀମାନ
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳପଦ ସେବି ।୩।
ଗୋବିନ୍ଦ ଘାଟେ ଗୋବିନ୍ଦ ରୂପ
ଦର୍ଶନେ କାଟିବ ମନ ତାପ
ପ୍ରେମାଶ୍ରୁରେ ହୃଦ ପଙ୍କିଳ ହୋଇବ
ଛଡ଼ାଇବ ଆଜନ୍ମର ପାପ
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳ ପଦ ସେବି ।୪।
ରାସସ୍ଥଳୀଠାରୁ ଯିବ ଚଳି
ଲୁଟିବ ଗୋପୀଙ୍କ ପାଦତଳି
ଆଶା କରିଅଛି ଏ ଗୌରଚରଣ
ଅର୍ଜିବି କି ପୁଣ୍ୟ କେଡ଼େ ଭଳି
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳ ପଦ ସେବି ।୫।

[ଏକଷଠି]

## କଳତାରଣ ଭଜନ

ଯା ଯା ମନ ! ବୃନ୍ଦାବନ ମାୟାରେ ପଡ଼ ନା ।
ମୋର ବୋଲ ତୁ ଘୋର ସଂସାରସାଗରେ ବୁଡ଼ ନା ।ଘୋଷା।
ଦେଖ ଏ କଳିକାଳବ୍ୟାଳ ଅନ୍ତର୍ହିଁ କଠୋର ଗରଳ ଜାଳ
ଗୁଣିଆଁ ଶ୍ରୀ ଗୁରୁଗାରୁଡ଼ମନ୍ତ୍ର ହେଲେ ତୁ ଛୁଡ଼ ନା ।୧।
ସଡ଼ାଇବ ତନୁ ତ୍ରିତାପତାପ କଡ଼ାଇବ ନେତ୍ରୁ ସନ୍ତାପ ଆପ
ଛଡ଼ାଇବୁ ଯେବେ ବିଷୟୀପଙ୍କ ଧରିଥା ଦୃଢେ ନା ।୨।
ତର୍କ ଜନଙ୍କ ସଙ୍ଗ ମୁଞ୍ଚ ବିତର୍କ କରିବେ ଟି ପୁଞ୍ଚ
ବିର୍କତ କରି ଭୁଲାଇ ମାରିବେ ଜାଣି ତୁ ଜଡ଼ ନା ।୩।
ସାଧୁଙ୍କ ବଚନ ମଧୁର ପର୍କ ଶ୍ରୁତ ମୁଖେ ମାଧୁରୀକ ତୁ ପର୍ଶ
ଅର୍ଜିତ ହୋଇ ଯିବୁ ଟି ମୂର୍ଖପଣରେ ଏଡ଼ ନା ।୪।
ଭୂଷିତ ଦ୍ୱିଜ ଗଉର ଏବେ ଦାସୀତନୁକୁ ଲଭିବୁ ଯେବେ
ଆଶ୍ରିତ କରି ଶ୍ରୀଗୁରୁଚରଣ ବ୍ୟର୍ଥରେ ସଡ଼ ନା ।୫।

---

[ବାଷଠି]

## ଶ୍ରୀବୃନ୍ଦାବନଧାମ ଭଜନ

ରେ ମୂଢ଼ମନ ବୃନ୍ଦାବନ ଧାମକୁ ଭଜୁଥା ।
ଶ୍ୟାମନାଗର ପ୍ରେମସାଗରେ ନିରନ୍ତେ ମଜୁଥା ।ଘୋଷା।
ଶୁକ ପିକ ଭୃଙ୍ଗ ମୟୁର ଗାନ କରି ହରି ନାମ ଉତ୍କୃଷ୍ଟ ତାନ
କାନକୁ କେଡ଼େ ମଧୁର ଲାଗୁଛି ମନରେ ହେଜୁଥା ।୧।
ଶ୍ରୀବ୍ରଜମଣ୍ଡଳ କେମନ୍ତ ସ୍ଥାନ ନିଶ୍ଚଳ ସେ ସ୍ଥଳ କରି ତୁ ଧ୍ୟାନ
ଧନକୁ ଧନ ତୁ ମନକୁ ବୁଝାଇ ମାନକୁ ତେଜ ଥା ।୨।

ସତତେ ସଜ୍ଜନ ସଙ୍ଗ ଅର୍ଜ୍ଜ ଉଚ୍ଚେ ହରି ନାମ ଧରି ତୁ ଗର୍ଜ୍ଜ
ବରଜବାସୀଙ୍କ ଚରଣରଜରେ ଅଙ୍ଗକୁ ମାଜୁ ଥା ।୩।
ଦ୍ୱିଜ ଗଉର କହେ ଏ ଶ୍ରେଷ୍ଠ ସେ ବ୍ରଜସ୍ଥଳେ କରି ତୁ ଆଶ
ବ୍ରଜ ଉପାସିକ ସାଧକ ସିଦ୍ଧ ଜନଙ୍କୁ ଖୋଜୁ ଥା ।୪।

---

[ ତେଷଠି ]

## ବ୍ରଜବାସ ଲାଳସା ଭଜନ

ଉଠ ମନ ବୃନ୍ଦାବନକୁ ଯିବା ଆଉ ମଠ ମଠ କାହିଁକି
ଏ ଘଟ ଚୋର କେତେ ଦିନ ରହିବ,
ଏ କଥା ଚେତନା ନାହିଁକି ।ଘୋଷା।
ସଖୀ ସହିତରେ ଦର୍ଶନ କରିବା
ନନ୍ଦ ଜଶୋଦା କହ୍ନାଇକି
ଶ୍ରୀ ଗୁରୁ ସଖିଙ୍କି ଜଣାଇ କରିବା
ନୂଆ ଦାସୀ ହେବା ପାଇଁକି ।୧।
ସେବାରେ ତତ୍ପର ହେବା ହରବର
ଦ୍ୱାରେ ନିକୁଞ୍ଜେ ରହିକି
କେ ବାରଣ କରି ପାରେ କି ଏଥିକି
କେବଣ କାରଣେ କାହିଁକି ।୨।
ନୟନ ସଫଳ କରିବା ଶ୍ରୀ ବ୍ରଜ
ଅଯୂନ ବିପିନ ଗୃହିଁକି
ରାଧେ ଶ୍ୟାମ ବୋଲି ନାଚିବା ଗଡ଼ିବା
ପ୍ରେମ ମାଧୁରିସ ଖାଇକି ।୩।

କହେ ବହୁ ଝୁଲ ଝୁଲେ ଝୁଲ ଝୁଲ
ସେ ଦେଖେ ହୋଇବା ବାଇ କ
ଗୌର ଦ୍ୱିଜ ଭଣେ ଶ୍ରୀ ଯମୁନା ବନେ
ମଗ୍ନ ହେବା ଅବଗାହକ ।୯।

———

[ଚଉଷଠି]

## ବୃନ୍ଦାରଣ୍ୟ ସ୍ମରଣ ଭଜନ

[ଗଳ୍ପିଣି ଚ ଗଳ୍ପ କଥାରେ ସଙ୍ଗୀତ ବୃତ୍ତେ]

(ରାଗ ତୋଡ଼ିପରଜ--ଆଦିତାଳ)

କେତେଶୋଭା କୁଞ୍ଜବନ ଗୋ ସଜନ !
କେତେ ଶୋଭା କୁଞ୍ଜବନ
ନାନା କୁସୁମିତ ତରୁଲତା ବ୍ରାତ
ଅନା ଅନା କ ଯତନ । ଘୋଷା ।
ଯହିଁ ବିହରନ୍ତି ନୀଳମଣି ହାରି
ଯଶୋଦା ନନ୍ଦନନ୍ଦନ
କ ଉପମା ଦେବା ସଜକ ମଘବା-
ନିଳୟ ନନ୍ଦନ ବନ ଗୋ ।୧।
କୁନ୍ଦନ ପ୍ରତିମା ବୃଷଭାନୁ ଜେମା
ଯହିଁ କରେ ବିହରଣ
ଭୂମି ଚିନ୍ତାମଣି କଳ୍ପଦ୍ରୁମ ଶ୍ରେଣୀ
ଅଗଣନ ବିଦ୍ୟମାନ ଗୋ ।୨।

ଶୁକ ପିକ ସାରୀ ମୟୂର ମୟୂରୀ
ଭୃଙ୍ଗ ଭ୍ରମରିକାଗଣ
ଜୟ ରାଧେଶ୍ୟାମ ବୋଲିକ ସୁଷମ
କରୁଛନ୍ତି ମୃଦୁ ଗାନ ଗୋ ।୩।
ପରା ଶରଦନ ବସନ୍ତ ରାଜନ
ଷଡ଼ୃତୁ ସହିତେଣ
ସେବଇ ସତତ ଯୁଗଳ ଚରଣ
ଫୁଟାଇ ସର୍ବ ସୁମନ ଗୋ ।୪।
ରତ୍ନ ବେଦିକାରେ ରତନ ଆସନେ
ବିଜୟେ ରାଧା ମୋହନ
ସଚେ ଏତେ ଭାଗ୍ୟ ଦରଶନ ଯୋଗ୍ୟ
ହେବ ଗଉର ଚରଣ ଗୋ ।୫।

---

[ପଞ୍ଚଷଠି]

## ବୃନ୍ଦାବନ ବାସ ଭଜନ

(ମାନସୀ ରଚମି ଧମି ମାନ ତେଜ ଏଣିକ— ବୃତ୍ତେ)

ଚାଲ ମନ ! ବୃନ୍ଦାବନ ନିକୁଞ୍ଜରେ ରହିବା
ଏଥି ଥାଇଁ କାହିଁ ପାଇଁ ଏତେ ଦୁଖ ସହିବା । ଘୋଷା ।
ପୂର୍ଣ୍ଣମାସୀଙ୍କ ଶ୍ରୀମୁଖରେ ମନବାଞ୍ଛା କହିବା
ଦାରସୁତ ଗୃହ କାସ ଭାର କପାଁ ସହିବା ।୧।
ବ୍ରଜବାସୀଙ୍କ ସେବାର ଅନୁଗତ ହୋଇବା
ସାଷ୍ଟାଙ୍ଗ ହୋଇଣ ତାଙ୍କ ପାଦତଳେ ଶୋଇବା ।୨।

ଭୁଣ୍ଡେ ରାଧାକୃଷ୍ଣ ବୋଲି କୁଣ୍ଡେ ଅବଗାହିବା
କଳ୍ପକଳ୍ପର କଳୁଷ ଅଳ୍ପକାଳେ ଦହିବା ।୩।
ନର୍ତ୍ତନ-କୀର୍ତ୍ତନ କରି ହରିନାମ ଗାଇବା ।
ଆନନ୍ଦ ହୋଇଣ ଊର୍ଦ୍ଧେ କରତାଳି ବାଇବା ।୪।
ଗୌର ଦ୍ୱିଜ ବୋଲେ ମାଧୁକରୀ ମାଗି ଖାଇବା
ନନ୍ଦସୁତ ଭଜି ପ୍ରେମାନନ୍ଦସୁଖ ପାଇବା ।୫।

---

[ଛଅଟି]

## ଶେଷଯାମ ଭଜନ

(ରାଗ କରୁଣାଶ୍ରୀ ତାଳ ଆଠତାଳି)

[ନରମେ କହିଲେ ମରମେ ବାଧୁଛି—ବୃତ୍ତ]

ଜୀବନ ପ୍ରଦୀପ ହେଲା ଦପଦପ
ପ୍ରବେଶ ହୋଇଲା ଶେଷ ଯାମ
ଶ୍ରୀବଂଶୀବଦନ ଶ୍ରୀମଧୁସୂଦନ
ରଟ ରେ ରସନା ! ନୋହି ଭ୍ରମ ।ଘୋଷା ।
ବୋଲ ବୋଲ କୃଷ୍ଣ କେଶବ ମୁରାରି
ହୃଷୀକେଶ ଦୀନବନ୍ଧୁ ଦଇତାରି
ନୃସିଂହ ବାମନ ଶଙ୍ଖଚକ୍ରଧାରୀ
ବଳିଧ୍ୱଂସୀ ରାମ ଘନଶ୍ୟାମ ।୧।
ବୋଲ ବାରମ୍ବାର ମାଧବ ମୁକୁନ୍ଦ
କେଶବ ଅଚ୍ୟୁତ ଶ୍ରୀସଚ୍ଚିଦାନନ୍ଦ

ଶ୍ରୀଗୋପୀଜନବଲ୍ଲଭ ଆନନ୍ଦକନ୍ଦ
ବୈକୁଣ୍ଠ ଶ୍ରୀପତି ଅଭିରାମ ।୨।
ନିତ୍ୟ ନିରଞ୍ଜନ ସତ୍ୟ ସନାତନ
ଗୋବର୍ଦ୍ଧନ ଧାରୀ ଶ୍ରୀ ନନ୍ଦନନ୍ଦନ
କାଳୀୟଗଞ୍ଜନ ଯାମଳାଭଞ୍ଜନ
ବୃନ୍ଦାବନଚନ୍ଦ୍ର କୋଟିକାମ ।୩।
ରସରାଜ ରସମୟ ରସିକେନ୍ଦ୍ର
ଗୋକୁଳକୁଳ କୁମୁଦ ପୂର୍ଣ୍ଣଚନ୍ଦ୍ର
ଦ୍ୱିଜ ଗୌରମତ୍ତ ଭ୍ରମତ୍ତ ମିଳିନ୍ଦ
ଯୁଗଳେ ପୂର୍ଣ୍ଣ କରୁ କାମ ।୪।

---

[ସତଷଠି]

## ଶ୍ରୀଗୌରାଙ୍ଗ ଭଜନ

ଭଜ ରେ ପାଗଳ ମନ ! ଗୌରାଙ୍ଗ ମୂରତିକି
ପତିତପାବନ ଯା ନାମ ରେ । ଘୋଷା ।
ଶୁକ ସନକ ଆଦି ଯେଉଁ ନାମକୁ ଭଜି
ଲଭିଲେ ବଇକୁଣ୍ଠ ଧାମ ରେ ।୧।
ଧନ୍ୟ ସେ ପୁରନ୍ଦର ଶଚୀ ଦେବୀ ଉଦର
ଧନ୍ୟ ସେ ନବଦ୍ୱୀପ ଗ୍ରାମ ରେ ।୨।
ଧନ୍ୟ ସେ ନରନାରୀ କି ତପ ଥିଲେ କରି
ଲଭିଲେ ଗୌରଭକ୍ତି ପ୍ରେମ ରେ । ୩ ।
ସେ ଗୌର ପଦ୍ମପାଦେ ମଜ୍ଜ ମଜ୍ଜ ଆନନ୍ଦେ
ପୂର୍ଣ୍ଣ ହେବ ତୋ ମନସ୍କାମ ରେ । ୪ ।

ଜପି ତୁ ମାଳା ଝୁଲ ସାନ୍ତ୍ୱିକେ ଉଠ ଫୁଲ
ସୁଖ ଲଭିବୁ ପ୍ରତି ଯାମ ରେ । ୫ ।
ଗୌରଦ୍ୱିଜ କହଇ ଯମ ଯାତନା ନାହିଁ
ଚନ୍ତ ରେ ଗୌର ଗୁଣ ଧାମ ରେ । ୬ ।

---

[ଅଠଷଠି]

## ଶ୍ରୀକୃଷ୍ଣ ଜନ୍ମ

ନନ୍ଦଘରେ ଆନନ୍ଦ । ଆଜ ରେ ନନ୍ଦ ଘରେ ଆନନ୍ଦ ।
ରାଣୀ ଯଶୋମତୀ କୋଳେ ନୀଳମଣିଚନ୍ଦ । ଘୋଷା ।
ଭାଦ୍ର କୃଷ୍ଣାଷ୍ଟମୀ ତିଥି ନକ୍ଷତ୍ର ରୋହିଣୀ
ଜନମ ବ୍ରହ୍ମାଣ୍ଡନାଥ ଶୁଭବେଳା ଜାଣି । ୧ ।
ବସୁଦେବ ଥୋଇଗଲେ କନ୍ୟା ବଦଳାଇ
ଏ ରହସ୍ୟ ବ୍ରଜବାସୀ ନ ଜାଣନ୍ତି କେହି ।୨।
ପୁତ୍ର ଜନ୍ମ ମହୋତ୍ସବେ ନନ୍ଦ ନାଚେ ଭଲ
ଜୟ ଜୟ ହରିଧ୍ୱନି ବରଜ ମଣ୍ଡଳୀ । ୩ ।
ବାଜଇ ଶଙ୍ଖ ମହୁରୀ ଶିଙ୍ଗା ଭେରୀ ତୁରୀ
ମନ୍ଦିର ମର୍ଦ୍ଦଳ ବାଜେ ଆନନ୍ଦ ସବୁରି ।୪।
ଉପନନ୍ଦ ଅଭିନନ୍ଦ ସୁନନ୍ଦ ସହିତେ
ନାଚନ୍ତି ସର୍ବ ଗୋପାଳେ ଗଉଡ଼ଆ ଗୀତେ ।୫।
ହାତେ କେନ୍ଦୁବାଡ଼ି କାନ୍ଧେ ଶୋହେ ଦୁଗ୍ଧ ଭାର
ଖେଳନ୍ତି ଲଉଡ଼ିଖେଳ ବଡ଼ ଚମତ୍କାର ।୬।
ବାଳ ବୃଦ୍ଧ ଯୁବା ଗୋପ ଗୋପୀଏ ସକଳେ
ନାଚନ୍ତି ଗୋରସ ମାଥେ ରଙ୍ଗ ଦଳେ ଦଳେ ।୭।

ଅପୂର୍ବ ନନ୍ଦ ଉତ୍ସବଆନନ୍ଦ ବଧାନ
ଗୌରଦ୍ୱିଜ ମହାନନ୍ଦେ ନାଚ କରେ ଗାନ ।୮।

---

[ଅଣସ୍ତର]

## ଗୋପୀଙ୍କ ବାଳକୃଷ୍ଣଦର୍ଶନ

ସଖି ! ଆସ ଯିବା ଦେଖି
ନନ୍ଦପୁରେ ମାଳ ମାଧବଙ୍କୁ ଦେଖି ସୁଫଳ କରିବା ଆଖି । ଘୋଷା ।

କେ ବୋଲେ ସଙ୍ଗାତ ! ଅଛି ଖପଗାତ
ବଚନ ତୁମେ ତ କହ
ସାତଶ ପଞ୍ଚାଶ ବରଷରେ ନନ୍ଦ
ରଜା ପାଇଛନ୍ତି ପୁଅ ।୧।

କରେ ଅର୍ଘ୍ୟଥାଳ ଘେନି ଗୋପବାଳୀ
ନନ୍ଦ ମନ୍ଦିରକୁ ଚଳ
କାଳିଆ କାହ୍ନୁଙ୍କୁ ବନ୍ଦାପନା କରି
ଉଚ୍ଚେ ଦେଲେ ହୁଳହୁଳ ।୨।

କେ ବୋଲଇ ଦେଖ ଅସିତମୟୂଖ
କାନ୍ତି ଆଜ ଏ କି ସୁଖ
ଇନ୍ଦ୍ରଧନୁ ଜିଣି ଭ୍ରୂଲତାର ଠାଣି
କି ସୁନ୍ଦର ଚନ୍ଦ୍ର ମୁଖ ।୩।

କେ ବୋଲଇ କରିବରଶୁଣ୍ଢ ଜିଣି
ଆଜାନୁଲମ୍ବିତ ବାହୁ
ରହିଁଦେଲେ ଆଖି ରହୁଅଛି ଲାଖି
ମୁରୁଛି ନୁହଇ ଆଉ । ୪ ।

ଶାର୍ଦ୍ଦୂଳ ଘୃତକ ମାନୁଛୁ କଆନ୍ତ
ସରୁକଣ୍ଠୀ ମୃଗରାଜ
ଚରଣ ରଙ୍ଗକୁ ତରୁଣ ଅରୁଣ
ଶରଣ ଗଲା କି ଆଜ ।୫।
ଶୁଣ ଶୁଣ ପ୍ରାଣ ସଖି ! ଗୋ କଥାଏ
ମୋର ଶୁଣ ପ୍ରାଣସଖି !
ଗୋପ ନବବାଳୀ ଯେତେକ ଅଛନ୍ତି
ସବୁର ସଂଖାଳ ଏହି ।୬।
କେ ବୋଲେଇ ରାମା ସଂସାର ଉପମା
ଏଠାକୁ ସୁଷମା ନାହିଁ
ଗୌର ଦ୍ୱିଜ ଭଣି ଶୁଣିଥା ମିତଣି !
ତାହାକୁ ଉପମା ସେହି ।୭।

---

[ସତୁର]

## ନନ୍ଦକୋଳେ ଶ୍ରୀ ଗୋବିନ୍ଦ

(ରାଗ ଶଙ୍କର ଭରଣ—ତାଳ ଆଠତାଳୀ )

ନନ୍ଦକୋଳେ ଶ୍ରୀ ଗୋବିନ୍ଦ
ବାଜେ ଶଂଖ ଭେରୀ ତୂରୀ ଭୁବନ ଆନନ୍ଦ ।ଘୋଷା ।
ନୀଳ ନଳିନ ଲପନ ଶୋଭା ସୁସମ୍ପଦ
ଗୋପୀ ଗୋପାଳଙ୍କ ସୁଖ ପୁନଅଁର ବୃନ୍ଦ ।୧।
ଯଶୋଦା ଅଞ୍ଚଳନିଧି ଶ୍ରୀ ବାଳମୁକୁନ୍ଦ
ଲାବଣ୍ୟ ଚରଣ ତଳ ରକ୍ତ ଅରବିନ୍ଦ ।୨।

ବଙ୍କିମା ଗୃହିଣୀ କି ସେ ହାସ ମନ୍ଦ ମନ୍ଦ
ସଂସାର ସାର ସୁଷମା ସେ ପରମାନନ୍ଦ ।୩।
ପାନ କରିବାକୁ ସେ ପଦାବ୍ଜ ମକରନ୍ଦ
ଗୌର ଚରଣ ଦ୍ୱିଜର ମାନସ ମିଳିନ୍ଦ ।୪।

---

[ଏକତ୍ରିଶ]

## ଯଶୋଦା ସୌଭାଗ୍ୟ

[କେ ସଜନୀ କି ଦେଖିଲୁ ଆଜ ନେତ୍ର — ବୃତ୍ତ]

ଗୋ ଯଶୋଦେ ! କି ତପେ ପାଇଛ ସୁତ
କେଉଁ ବ୍ରତେ କେଉଁ ଦିଅ ମନାଇଲ ଧନ୍ୟ ମା ! ତୁମ୍ଭ ସୁକୃତି । ଘୋଷା ।
ଗୋକୁଳ କୁଳ କୁମୁଦ କଳାକର ଷଡ଼ଗୁଣ ଧର ଅଚ୍ୟୁତ
ଉଇଲ ଦିନୁ ଏ ବରଜ-ଅମ୍ବରେ ବର୍ଷନ୍ତି ସୁଖଅମୃତ ।୧।
ଧନ ଜନ ସିଦ୍ଧି ଗୋପଲକ୍ଷ୍ମୀ ନିଧି ସବୁ ସେ ହୁଏ ବର୍ଦ୍ଧିତ
ଯାହାକୁ ତ ସେତେ ପ୍ରାପତ ହୁଅଇ ଅଧାମ ଲବଣୀ ଘୃତ ।୨।
ଗୃହ୍ନ ବଂଶୀପାଣି ହିଭଙ୍ଗିମା ଠାଣି ସର୍ବଗୁଣେ ଅଳଙ୍କୃତ
ଅଲଭ୍ୟ ରତନ କଳାମାଣିକ କି ଅବିନାଶୀ ଅପ୍ରାକୃତ ।୩।
ଗଣ୍ଡିଛନ୍ତି ଦେଖ ପୂର୍ଣ୍ଣମାସୀ ଭାବ ଦୃଷଭାନୁ ଜେମାକୁ ତ
ଗୌରଦ୍ୱିଜ କହ୍ନ ଆସ୍ୱାଦୁଥିବାନ୍ତି ରାଧାକୃଷ୍ଣ ନାମାମୃତ ।୪।

---

(ବାସ୍ତର)

## ଯଶୋଦା ଭାଗ୍ୟବତୀ ଯଶୋଦା

(ପଗ ତମାଳ ତାଳ ଝୂଲଝୂଲା)

ବଡ଼ ଭାଗ୍ୟବତୀ ଗୋ ନନ୍ଦରାଣୀ ଯଶୋଦେ
ଏତେ କାଳେ ଯାହା କୁମର ପାଇଛ
କେଉଁ ପୁଣ୍ୟବଳେ ଗୋକୁଳେ ହାଦେ । ଘୋଷା ।
କେତେ ଯୁଗ ବସି ବରଷ କେତେ ତପେ ଥିଲ ଗୋ ରତ
ଇନ୍ଦ୍ର ନୀଳମଣି ଲାବଣ୍ୟ ପ୍ରତିମା
କୁମର ପାଇଁକି ମନସ୍ୱଚ୍ଛନ୍ଦେ ।୧।
କେହୁ ବୋଲେ କଳା ମାଣିକ ରତନକୁ କେଉଁ ବଣିକ
କେବଣ କୁନ୍ଦେ ରସାଣି ଗଢ଼ିଥିଲ
ନିରୁପମ ଶିରଶୋଭାସମ୍ପଦେ ।୨।
କେ ବୋଲେ ଏ କାଳିଆ ଗୋବିନ୍ଦ ଗୋପଗୋପୀ ମୋହନ ଫାନ୍ଦ
କୋଟି ପରମାନୁ ଯେବେ ବଞ୍ଚିଥାଉ
ସର୍ବେ ଦୁଲଦୁଲି ଦିଅ ଆନନ୍ଦେ ।୩।
ଦ୍ୱିଜ ଗୌର ଚରଣ ଭଣି ଶୁଣ ଆଗୋ ବ୍ରଜରମଣି
ଏ କାଳିଆ ହାତ ସବୁର ଗୋ ଥାଉ
କୃତାର୍ଥ ହୋଇବା ଲଗାଇ ହୃଦେ ।୪।

———

[ଚୈତ୍ର]

## ଜନ୍ମୋତ୍ସବ

ବଡ଼ ଆନନ୍ଦ ରେ ଆଜ ଲଗିଛୁ ଗୋପର ଦାଣ୍ଡେ
ନାନା କୁତୂହଳେ ନାଚନ୍ତ ଗୋପାଳେ
ହରି ହରି ବୋଲି ତୁଣ୍ଡେ । ଘୋଷା ।
ରୂପକ ମର୍ଦ୍ଦଳ ତାଳ ବାଜେ ଘନ ଘନ
ସେ ତାଳ ବାଜେ ଘନ ଘନ
କଟୀରେ କଙ୍କିଣି ବାଜେ କଣିକଣି
ସୁବଳସ୍ୱ ଝଣଝଣ ।୧।
କେ ହସ୍ତକ କରଇ କେ କରଇ ଉଳ୍ଲୁଟ
ସେ କରଇ ଉଳ୍ଲୁଟ
ଝାଁଝାଁ ଝନକୁଚ ଥୈଗତେ ତାଥେଇ
ତାକତା ଥେଇ ତ୍ରିମିଣ୍ଡିଟ ।୨।
କେ ଆଳାପ କରେ ସାସା ସାରିଗମ ପଦ
ସେ ସାରିଗମ ପଦ
ମଙ୍ଗଳ ଗୁଞ୍ଜରୀ ରାଗରେ ମଲ୍ହାରୀ
ସୁସ୍ୱରେ କରଇ ନାଦ ।୩।
କେ ଉର୍ଦ୍ଧକୁ ହସ୍ତ ଟେକ ଗାନ କରେ ଉଚ୍ଚେ
ସେ ଗାନ କରେ ଉଚ୍ଚେ
କେବଣ ଗଉଡ଼ ବୁଡ଼ା ମହାଖୁଡ଼
ନଇଁ ନଇଁ କରି ନାଚେ ।୪।
କେ ଗାଏ ଗଉଡ଼ ଗୀତ କରଣ ତମାଳ ସେ
କରଣ ତମାଳ

ଗୋବନ୍ଦକୁ କାନ୍ଧେ ବସାଇ ଆନନ୍ଦେ
ନନ୍ଦ ନାଚେ ଛଳ ଛଳ ।୫।
କାମସେଣ ସୁସେଣ ଆବର ଚନ୍ଦ୍ରସେଣ
ସେ ଆବର ଚନ୍ଦ୍ରସେଣ
ବାହୁ ଦୋହଲାଇ ନାଚନ୍ତ ଗେଲାଇ
କର ଲୋକ ହରଷଣ ।୬।
ଗଗନେ ଦେଖନ୍ତ ଦେବେ କର ଏକ ଦୃଷ୍ଟି
ସେ କର ଏକ ଦୃଷ୍ଟି
ବୋଲେ ଗୌର ଦ୍ୱିଜ ବ୍ରଜପୁରେ ଆଜ
ହର ନାମ ମୃତ ବୃଷ୍ଟି ।୭।

---

[ଚଉପଦ]

## ଆନନ୍ଦ ହାଟ

(ରାଗ ଆନନ୍ଦ ମଞ୍ଜରୀ)

ଭଲ ହାଟ ଲଗିଛୁ ଖଣ୍ଡେ ।

କେ ବସି ଦେଖନ୍ତ ଉଚ୍ଚକଗଣ୍ଡରେ କେ ଆସି ଦେଖଇ ଦାଣ୍ଡେ ।ଘୋଷା-
ଆନନ୍ଦେ ଗୋପାଳେ ନନ୍ଦ ସିଂହଦ୍ୱାରେ ଠୂଳ
କାହାର ମୁଣ୍ଡରେ ରଙ୍ଗ ଚଉତନା କା ମୁଣ୍ଡେ ମୟୂରଚୂଳ ।୧।
କାହା ଶିରେ ଗୁଞ୍ଜାରର ମୁଣ୍ଡ ଥୋପି ଥୋପି
କାହାର ମୁଣ୍ଡକୁ ସୁନ୍ଦର ଦଶଇ ବାଙ୍କ ବଉଦଆ ଟୋପି ।୨।
କାହା କର୍ଣ୍ଣେ କୁଣ୍ଡଳ କା କର୍ଣ୍ଣେ ଫିରଫିରା
କେତୁ ବାହୁମୂଳେ ବାହୁଟି ବାନ୍ଧଣ ମାରୁଅଛୁ ଆଡ଼ଚରା ।୩।

କେ ଗଳାରେ ଲମ୍ବାଇଛୁ ଶ୍ୱେତ ଗୁଞ୍ଜମାଳ
କେବଣ ଗୋପାଳ ଗାଲଭୁର ବାଇ ନାଚଇ ନୟନ ଢାଳ ।୪।

କେ ପିନ୍ଧ ଚଲଣା କାଛୁ ଭିଡ଼ଅଛୁ ଜଙ୍ଘେ
କାହାର ଅଙ୍ଗକୁ ଘଟଣା ହୋଇଛୁ ଉଦରଣି ଜିରଅଙ୍ଗେ ।୫।

କେହୁ ତେଲେଁ ଆଡେ ରହ ଦାଏ ଅଙ୍ଗ ଢାଳ
ଝୁଣୁଝୁଣୁ ଘଣ୍ଟି ଘାଗୁଡ଼ି ବାଜଇ ଶିଙ୍ଗା ବେଣୁ କରତାଳ ।୬।

କେ କାହାକୁ ଡାକେ ଶୁଇ ଜଗିଥା ତୋ ଦେହ
ବହୁତ ଦିନକେ ହାବୁଡ଼େ ପଡ଼ିଛୁ କାହିଁ ଯିବୁ ରହ ରହ ।୭।

ଲଉଡ଼ି ଖେଳରେ ରମି ହେଲେ ଯୋଡ଼ଯୋଡ଼
ଟାଇ ଟିକେ ଠୁକୁ ଶବଦ ଶୁଭଇ ବାଜଣ ବାଡ଼କ ବାଡ଼ ।୮।

ନାନା ହାସ ରସ କଉତୁକ ଭଙ୍ଗୀ ନାଟ
ଅତି ସମ୍ଭ୍ରମରେ ନନ୍ଦର ଦୁଆରେ ବସିଛୁ ଆନନ୍ଦ ହାଟ ।୯।

ନନ୍ଦର ବାଡ଼ିରେ କେ କୁଙ୍କୁମ ନେଇ ଘଷି
ଖୁରକଲ କେଶରେ ହଳଦ ଲଗେଣ ସୁନାଗୁଣା ପ୍ରାଏ ଦିଶି ।୧୦।

ଗୋପାଳଙ୍କ ମଧ୍ୟେ ନନ୍ଦ ନାଚେ ଢଳ ଢଳ
ପୁରୁଷମାନଙ୍କ ହର ଶବଦକୁ ନାରୀଙ୍କର ହୁଳହୁଳ ।୧୧।

ଗୌର ଦ୍ୱିଜ ମନ ଅତି ଆନନ୍ଦରେ ଧାଇଁ
ଅନେକ ଦିନକୁ ଆଶା କରଅଛୁ ସେ ନାଟ ଦେଖିବା ପାଇଁ ।୧୨।

[ପଞ୍ଚସ୍ୱର]

## ନୀଳ ହାତୀ

ହାଣ୍ଡି ଝୁଲଇ ରେ ଦିଶଇ କେଡ଼େ ସୁନ୍ଦର

ଅପୂରୁବ ହାଣ୍ଡି    କାହୁଁ ଆସିଅଛି
କିବା ଏ ନୀଳ ମନ୍ଦର । ଘୋଷା ।

ଦେଖ ଦେଖ ସଖି    ବନ୍ଧୁଭଙ୍କି ଆଖି
ସୁହାଣି ରଷମ ଛଟା ।
ମତ୍ତ କରିବର    ହେଲା କାଳେ ଆଜ
ନ କରିବ କେଉଁ ହଟା ।୧।

କେମନ୍ତ ସୁନ୍ଦର    ଦେଖ ରଦ ତାର
ଅଙ୍କୁରି ଆସୁଛି ସନ୍ଧି !
ନାସି ଗଣ୍ଡ ସ୍ଥଳେ    ଭେଦିବ ଏ କାଳେ
ଏଥିରେ ସଂଶୟ ନାହିଁ ।୨।

ଗଜ କପାଳକୁ    ସୁନ୍ଦର ଦିଶଇ
ଚନ୍ଦ୍ର ବନ୍ଦୁ ଆଡ଼କରି
ସୁନ୍ଦରୀଙ୍କ ଭାଲ    ସିନ୍ଦୂର ଲଗିଲେ
କାଳେ ନୋହିବ କ ତୋରି ।୩।

ଏ ନୀଳ ବାରଣ    ରଣକୁ ବରଣ
ହେଲକାଳେ ଆଗ ବଢ଼ି
ସମ୍ବର ଅରିର    ସମରରେ ହାରି
ଯିବ ଧନୁଶର ଛାଡ଼ି ।୪।

କେ ବୋଇଲ ଏ ହାଣ୍ଡି    ମଥୁରାରେ ଥିଲା
କଂସ ରାଜା ବନ୍ଦଘରେ

ଶାଙ୍କୁଳୀ ଛୁଣ୍ଡାଇ ପଳାଇ ଆସିଣ
ରହିଛୁ ଗୋପନଗରେ ।୫।
କେ ବୋଲେ ଏ ହାତୀ କେଉଁଠାରେ ଥିଲା
ଗୋପକୁ ଆଣିଲା କେହୁ
ନାନା ଖଦା ନାନା ବୋଲଣା କରବ
କେ ସହିବ ଏହା ଦାଉ ।୬।
କେ ବୋଲେ ରଜାର ଅନେକ ଡଗର
ଆସିଥିଲେ ଜଣେ ଜଣେ
ଦୁରୁଦଣ୍ଡ ହାତୀ ଧରା ନ ପଡ଼ଣ
ସଭିଙ୍କି ମାଇଲା ପ୍ରାଣେ ।୭।
କେ ବୋଲେ କାଳଆ ହାତୀଟି ମେଳଆ
ନ ମାନଇ ଖାଲ ଖମା
ଗୋପପୁର ଦହି ଦୁଧସର ଖାଇ
ହୋଇଛି ଧୁମୁରୁଧୁମା ।୮।
କେ ବୋଲେ ଗୋକୁଳ ଯମୁନା ବନକୁ
ଉଜାଡ଼ିବ ଏହୁ କାଳେ
ଏ ହାତୀକ ନେଇ ବାନ୍ଧି ରଖିଥିବା
କେଳିକଦମ୍ବର ମୂଳେ ।୯।
କେ ବୋଲେ ଏ ହାତୀ କନ୍ଧେ କେ ବସିବ
କାହାର ଏଡ଼େକ ଭାଗ୍ୟ
ଗୌର ଦ୍ୱିଜ ବୋଲେ ରାସ ମଣ୍ଡଳରେ
ବୃନ୍ଦାବଣ ହେବେ ଯୋଗ୍ୟ ।୧୦।

———

[ଛପ୍ପଣ]

## ନନ୍ଦରଜାର ଟିକ ପିଲଟି

ବଡ଼ ଛଳନ୍ଦ ଜଣେ ଲୋ ନନ୍ଦ ରଜାର ଟିକ ପିଲଟି
ଟିକ ପିଲ ବୋଲି ଯାହାକୁ ବୋଲନ୍ତି
ଚିର ପକାଇଲା ବକାର ପାଟି ।ଘୋଷା।
ଜନମ କାଳେ ଏନ୍ତୁରିଶାଳେ
ପୂତନା ଅସୁରୀ ଧଇଲା କୋଳେ
ଜାନୁରେ ବସାଇ ସ୍ତନ ଦେଲାବେଳେ
ଖିର ସଙ୍ଗେ ପ୍ରାଣ ଶୋଷି ନେଲା ଟି ।୧।
ଧାଇଁଲା ଦାଣ୍ଡେ ଗୋରସ ଭୁଣ୍ଡେ
ହାତ ବୋଳିଦେଲା ଗୋପୀଙ୍କ ମୁଣ୍ଡେ
ଧୂଳି ଖେଳ ଠାରେ ମିଳଣ ବୃନ୍ଦେ
ଅନ୍ଧକୁ ନୟନ ଘାତ ଦେଲାଟି ।୨।
ପାତିଲା କର ମାଗିଲା ସର
ଆଣି ଦେଲାକ୍ଷଣି ଥରକୁ ଥର
ଦହି ଦୁଧ ଛେନା ଶତେକ ଘର
ସଖି ! ତା କରକୁ ନ ଅଣ୍ଟିଲା ଟି ।୩।
ଗିଳି ଅନଳ ଭକ୍ଷିଲା ତାଳ
ବନେ ଧେନୁକାର ପଡ଼ିଲା କାଳ
କାଳନ୍ଦୀ ଜଳରୁ ବିଷ ଉଡ଼ାଇ ସେ
ପଦ୍ମ ତୋଳି କାଳୀ ଦଳି ଦେଲା ଟି ।୪।
ଭକ୍ଷିଲା ମାଟି ଖ୍ଲଟିକ ପିଟି
ଯଶୋଦା ଆପଣ ଦେଖନ୍ତେ ପାଟି

ଉଦର ଭିତରେ ବସନ୍ତ ବ୍ରହ୍ମାଣ୍ଡ
ମାତାକୁ ସେଠାରେ ମାୟା କଲ ଟି ।୫।
ଏଡ଼କ ଭଲ ସେ ଟିକ ପିଲ
କେ ଜାଣେ ଗୋ କେଉଁ ରାଇଜେ ଥିଲ
ଗଞ୍ଜର ଚରଣ ବୋଲେ କଂସ ଆଳେ
ବନ୍ଦଶାଳା ଠାରେ ଜନ୍ମ ହେଲ ଟି । ୬ ।

---

[ସତସ୍ତର]

## କୋକଭତୟ ଯଶୋଦା ବଳାପ

(ରାଗ—ଶୋକ ମଞ୍ଜରୀ)

ଗୋବଧନରେ ! ଆହା ମୋ ନୟନ ଘନ !
କାହିଁ ହରାଇଲ କେହ୍ନେ ନେଲ ମୋର ରଙ୍କରତନ । ଘୋଷା ।
ନାରୀକୁଳେ ଜନ୍ମ ହୋଇ          ସଂସାରେ ନ ଥିବେ କେହ୍ନ
ମୋହପରି କର୍ମହୀନ ।୧।
ଶୁଣିବି କାହା ମୁଖକୁ          ଦେଲୁ ଦାରୁଣ ଦୁଃଖକୁ
ହେଲ ଦଶ ଦିଗ ଶୂନ୍ୟ ।୨।
କେଡ଼େ ଦାରୁଣ ବିଧାତା          ଏଡ଼େ ଗୁରୁତର ଚନ୍ତା
କଲ ମୋ କର୍ମେ ଲେଖନ ।୩।
ଜାଣି ତୋତେ ହରାଇଲ          କୋକ ବୋଲି ଡରାଇଲ
ସେ ହେଲ କାଳ ବଚନ ।୪।
ଆହା ମୋ ଲବଣ୍ୟନଧି !          କରିବ ଏବେ କ ବୁଦ୍ଧ
ବାରେ ଦେଖା ତୋ ବଦନ ।୫।

କାହ୍ନି ଲୁଚ ଅଛୁ ଅସ     ବାବୁ ! ମୋ କୋଳରେ ବସ
କରାଇବ କ୍ଷୀରପାନ ।୭।
ତୋ ଗୁଣମାନ ସୁମର     କାନ୍ଦବା ଯାଏଁ     ଆତୁର
ଅଛୁ ଏ ପାପ ଜୀବନ ।୭।
ଗଉର ଚରଣ ଭଣି     କୃଷ୍ଣନାମ ଧର ଗ୍ରଣୀ
କଲେ ଅନେକ ବେଦନ ।୮।

---

[ଅଠସ୍ତର]

## ଅକଟ କୃଷ୍ଣ

ବାବୁ ବନମାଳ ରେ ! ମୋତେ ନ କର ଅଳ
ପଛେ ତୋତେ କୋଳେ ଧରି କ୍ଷୀର ଦେବ
ଦଣ୍ଡେ ମଠ କର ଦୁଃଖିପଣ୍ଡାଳ । ଘୋଷା ।
ଏହ୍ନକ୍ଷଣି ଦଧି ମନ୍ଥି ଖାଇବ
ନଶ୍ଚିନ୍ତରେ ତୋତେ କୋଳେ ଧରିବ । ୧ ।
ଆରେ ଜୀବଧନ ! ନୂଆ ଦୁଦ୍ଧଣ୍ଡ
ଭୁଞ୍ଜାଇବ ସର ଶାକର ଖଣ୍ଡ । ୨ ।
ଡାକୁଛନ୍ତି ସଙ୍ଗ ବାଳକ ଗଣେ
ଖେଳୁଥାଅ ବାବୁ ପୁରପ୍ରାଙ୍ଗଣେ । ୩ ।
ଭାଇ ବଳରାମ ନୁଆଇ କଛୁ
ସୁବୁଧ ପଣ ମୋ କାହ୍ନୁର ଅଛୁ । ୪ ।
ଡୋଳା ପିନ୍ଧୁଳା ମୋ କଳା କହ୍ନାଇ
ଚନ୍ଦ୍ରମୁଖକୁ ପରମୁଣ୍ଡା ଯାଇ । ୫ ।

ମାତାଙ୍କ ବଚନ କର୍ଣ୍ଣେ ନ ଶୁଣି
ଖୁଆକୁ ଧଇଲେ ମୁରଲୀପାଣି । ୭ ।
ହସ୍ତ ଟଳି ଆଉ ନ ପାରେ ରାଣୀ
ଏ ରସରେ ଦ୍ୱିଜ ଗଉର ଭଣି । ୮ ।

---

[ଅଣାଅଣି]

## ଦୁର୍ଦ୍ଦଣ୍ଡ କୃଷ୍ଣ

(ରାଗ ଲଳିତ ମଞ୍ଜରୀ)

ଧଇଲୁ ତ ଖୁଆଦଣ୍ଡ । ହୋଇଲୁ ତ କାହ୍ନୁ ଏଡ଼େ ଦୁର୍ଦ୍ଦଣ୍ଡ
ଗୋବର୍ଦ୍ଧନ ରେ ! ଯାଅ ଏଥି ହୋ ନା ଲଣ୍ଡଭଣ୍ଡ । ୧ ।
ଯେବେ ଦଧି ନ ମନ୍ଥିବ । କଂସରାଜା କର କେସନେ ଦେବ ।
ଗୋବର୍ଦ୍ଧନରେ ! ମୁଁ ତ ସଂସାରୁ ଉଚ୍ଛନ୍ନ ହେବ । ୨ ।
ଛାଡ଼ ମୁଁ ମନ୍ଥଇ ଦଧି । ମୋ ଦଧିବାବନ ଅଞ୍ଚଳନିଧି ।
ଗୋବର୍ଦ୍ଧନ ରେ ! ନୁହ ଉଚ୍ଛିଟିଆ ବାଇବୁଧି । ୩ ।
ନମାନୁ କାହ୍ନିଁକ କଥା । ଯାଇ ଶେଯେ ଆଉ ଟିକେ ଶୋଇଥା ।
ଗୋବର୍ଦ୍ଧନ ରେ ! ଆଉ ଦଅ ନା ମୋ ମନେ ବ୍ୟଥା । ୪ ।
ନ ବୁଝନ୍ତେ ଯାଳମଣି । କାଖରେ ସେ ଝଣି ଧଇଲେ ରାଣୀ ।
ଏହା କାଳେ ଯେ । ଗୌରଦ୍ୱିଜ ରସ ଭଣି । ୫ ।

---

[ଅଣି]

## ଅବୁଝା କାହ୍ନୁ

ଶ୍ୟାମ ସୁନ୍ଦର ରେ ! କହୁଛି ମୋ ବୋଲ ଶୁଣ
ଏତେବେଳେ ପର ମୋତେ ଜଞ୍ଜାଳ ଲଗିଛୁ ଧନ ! ।୧।
ଶୀତଳ ବେଳରେ ଯେବେ ନୋହିବ ଦଧି ମନ୍ଥନ
ଖର ଲଗିଲେ ପର ଲବଣୀ ହୋଇବ ଲୀନ । ୨ ।
ଏ ଗୋପପୁରେ ବାଳକେ ବଡ଼ ଅବୁଝ ଦୁର୍ଜ୍ଜନ
ସୁବୁଧିସୁନା ମୋ କାହ୍ନୁ ସମସ୍ତେ ବୋଲନ୍ତି ଧନ୍ୟ । ୨ ।
ନିଦ୍ରା ତ ନାହିଁ ଦୁଃସିତ ଜୃମ୍ଭା ଆସେ ଘନ ଘନ
ଦୁଃଖିତ ଦିଶୁଛୁ ତୋର ଫୁଲ ନଳିନ ନୟନ । ୩ ।
ଦେଖୁଅଛୁ ପର ଉଠିନାହାନ୍ତି ଧବଳବଦନ
ଚାଲଙ୍କରେ ଯାଇ ସଙ୍ଗେ ଜଣେ ଥା ଦଣ୍ଡେ ଶୟନ । ୪ ।
ଯେତେ ବୁଝାଇଲେ ନ ବୁଝିଲେ ପଙ୍କଜ ବଦନ
ମାତାଙ୍କ ଚରଣ ଧରି କରନ୍ତି ହରି ରୋଦନ । ୫ ।
ଗୌର ଦ୍ୱିଜ କହେ ମାଏ ମୋ ସାନ ବଚନ ମାନ
ଆଗ ଖିର ଦେଇ ପଛେ କରୁଥା ଦଧି ମନ୍ଥନ । ୬ ।

———

[କୋଅଣି]

## ନଟକୃଷ୍ଣ

[ନ ଡେଜବ ମୁରଲୀ ଧର ବୃତ୍ତେ]

ଜା ସୁନ୍ଦର କଳା କହ୍ନାଇ
କେ ଦେଲା ତାକୁ ଏ ବେଶ ବନାଇଁ । ଘୋଷା ।

ଝୁଲି ଝୁଲି ନାଚେ ଖେମଟା ତାଳରେ
କି ରଙ୍ଗେ ବାଙ୍କେ ଅନାଇଁ ଅନାଇଁ
ନୂଆ ଗୁଆଳୁଣୀ ଦୁଆ ଭୁଆସୁଣୀ-
ମାନଙ୍କ ମାନସ ନିଏ ମନାଇଁ । ୧ ।

କିଏ ଡାକୁଥାଇ ଅନାଇଁ ବନାଇଁ
କେହୁ ଡାକେ ଗେଲେ ସନାଇଁ ଦନାଇଁ
ନନ୍ଦ ରାଣୀଙ୍କର ନେସରନ୍ତା ପୁଅକୁ
କେ କେତେ ଚମାଲି ମେଲେ ଦେନାଇଁ । ୨ ।

କିଏ ଯାଚୁଥାଇ ଖଣ୍ଡ ସରପୁଲି
ଅଧାମ ଗୋଟିକା ଛେନା ଘନାଇଁ
କିଏ ଚୁମ୍ବିଦିଏ କଳାମୁନ୍ଦ ମୁଖେ
ସେ ହଲ୍‌ହେ ନେନ ଥନଥନାଇଁ । ୩ ।

ଅଞ୍ଚଳ ପତାଇ କଞ୍ଚାଳିଆ କାହ୍ନୁ
ନବମାଡୁ ମାଗେ ଖନଖନାଇଁ
ଗୌରହରି କହ ଧନ୍ୟ ଗୋପଗୋଇ !
କେଉଁ ଦାଉଁ ଚୁବେ ଥିଲ ମନାଇଁ । ୪ ।

———

[ବସ୍ତାଆଣି]

## ନାଟୁଆ କାହ୍ନୁ

ବଡ଼ ଢଙ୍ଗ ଜଣେ ନନ୍ଦରଜାର ଟିକ ପିଲାଟି
ଗୋପଗୋପୀଙ୍କର ମନକୁ ମୋହୁଛି
ଏ ଅଜବ ପିଲା କାହିଁ ଥିଲା ଟି । ଘୋଷା ।

କ ରଙ୍ଗରେ ଦେଖ ନାଚ କରୁଅଛୁ
କର କ ଗୃହାଣୀ ନାସାଫୁଲ ଟି
ଏତକ ବନ୍ଧୁ ତ ହେଲଣି ଏସନ
ବଡ଼ ହେଲେ କ ନ କରେ ଭଲ ଟି ।୧।
ମୋ ମନେ ମଣୁଛୁ ପ୍ରତି ଘରେ ଘରେ
ଫିଟାଇବ କେତେ କବାଟ ଛାଟି
ଏତିକ ବେଳୁ ତ ଦେଖାଇ ହେଲଣି
ମଦନଛଇକ ଆଗ ତରାଟି ।୨।
ଏକ ଅପଘାତ ଦେଖିଲ ଗୋ ମିତ !
ଦେଖା ଶୁଣା ନାହିଁ ଯାହା କଲ ଟି
ଘରକ ଗୋରସ ଚୋର କରେ ଦେଲ
କବଳକେ ତାହା ଦେଲ ତ ଲୁଟି ।୩।
ଆଉ କେତେ କେଉଁ ଖେଳିକ କରିବ
ରହିଥା ଦେଖିବ ନ କର ପାଟି
ଗୌର ଦ୍ୱିଜ ବୋଲେ ମନେପକାଇବ
କୁଞ୍ଜବନ ମଧୁବନ କଥା ଟି ।୪।

---

[ଚେଖୁଆରି]

## ନାଚୁଆ କହ୍ନା

ଦେଖିବା ଆସ କହ୍ନାଇ ନାଚ ଗୋ
ନନ୍ଦଘରେ ଆଜ ଆନନ୍ଦ ହାଟ ଗୋ ।ଘୋଷା
ପାଟ କାଛୁ ପିନ୍ଧି ଯଶୋଦା ଗୃହ
କଆଡ ଭଙ୍ଗିରେ ମାରେ କୁହାଟ ଗୋ ।୧।

ଚଉପାଶେ ଝୁଣ୍ଡ ଆଭେଗ୍ରଥାନ୍ତି
ମଧ୍ୟେ ବନମାଳୀ କାଳିଆ ସ୍ରନ୍ତି ଗୋ ।୨।
ଲକ୍ଷ୍ମୀ ତା ମୁରୁକ ହାସ ଜଣାନ୍ତି
ଭଲ୍ ନ ହେବ କା ମନ ଉଗ୍ରନ୍ତି ଗୋ ।୩।
ଗୌର ଦ୍ୱିଜ ଭଣି ସେ ନନ୍ତସନ୍ତି
ଦର୍ଶନେ ଜଞ୍ଜାଳଦଉଡ଼ କାଟନ୍ତି ଗୋ ।୪।

———

[ଚକ୍ରବାଅଣି]

## ନଟବର

ଗୋପୀ ଦେଇ କରତାଳି କ । ନଚାଇଲେ ପିଲ୍ ବନମାଳୀକ
କରେ ବାଇ ତାଳ ନାଚନ୍ତି ଗୋପାଳ ଅନାଇଁ ମନାଇଁ ବ୍ରଜବାଳୀଙ୍କି

। ଘୋଷା ।

କେ କରେ ଉକ୍ଲୁଟ ତାନରେ
କେହୁ ରସେ ଗୀତ ଗାନରେ
ବାଜେ କଣିକଣି କଟିର କଙ୍କିଣି
ନାଚବାର ତାନମାନରେ ।୧।
ରାମ ନାଚୁଛନ୍ତି ବାଦରେ
କୃଷ୍ଣଙ୍କୁ ଅନାଇଁ ଆଦରେ
ବାଜେ ଝୁମୁ ଝୁମୁ ଝୁମୁକ ନୂପୁର
ରୋହଣୀନନ୍ଦନ ପାଦରେ ।୨।
ଶ୍ରୀକୃଷ୍ଣ ମୁଖକୁ ଅନାଇଁ
କେଉଁ ଗୋପୀ କହେ ଘେନାଇଁ

ରାମଙ୍କର ନାଚ ଅଧିକ ହେବନି ତ
ତୁମ୍ଭେ କି ନାଚିଲ କହ୍ନାଇ ! ।୩।

ଗୋପୀମାନେ ଛଳବାଣୀକି
କହିବାରୁ ବେଣୁପାଣିଙ୍କ
ପାଦ ଛନ୍ଦ ନାଚ କଲେ ନନ୍ଦକୃଷ୍ଣ
ପ୍ରକାଶି ବିଭଙ୍ଗି ଠାଣିକି ।୪।

କେ ବୋଲେ ରେ ଧନ୍ୟ କାଳିଆ !
ଭଲ ରେ କାଇଞ୍ଜମାଳିଆ
କାହିଁ ରଖିଥିଲୁ ଏ ଭଙ୍ଗି ନର୍ତ୍ତନ
ଗୋପସୁତସଙ୍ଗମେଳିଆ ।୫।

ଯାହା ଶ୍ରୀଚରଣ ଧ୍ୟାନରେ
ବ୍ରହ୍ମା ଶିବ ସାବଧାନ ରେ
ସେ ପୁଣି ଗୋପରେ ନୃତ୍ୟ କରୁଛନ୍ତି
ଗୋପୀଙ୍କର ଅବଧାନରେ ।୬।

ଗୌରଚରଣ ମାନକୁ
ନ କହିବ ଆଉ ଆନକୁ
ଆହେ ଦୀନବନ୍ଧୁ, କରୁଣାନିଧାନ !
କର ଏହି ଅବଧାନକୁ ।୭।

———

[ପଞ୍ଚାଅଶି]

## ସ୍ନେହାତୁର ଯଶୋଦା

(ରାଗ ମହ୍ଲାରତାଳ ନିସ୍ବାରୀ)

ଶ୍ୟାମ ! ନ ଯା ନ ଯା ବନରେ ଶ୍ୟାମ ନ ଯା ବନ
ବାବୁ ! ତୁ ମୋ ଜୀବନଧନ ରେ । ଘୋଷା ।

ଆରେ ବାପ ବନମାଳି ! ତୁ ମୋ ନୟନପିତୁଳି
ତୋ ବିହୁନେ ଏ ଭୁବନ ଶୂନ୍ୟ ରେ ।୧।

ଦଣ୍ଡେ ନ ଦେଖିଲେ ତୋତେ କୋଟି ଯୁଗ ହୁଏ ମୋତେ
ମୁହିଁ ରଙ୍କ ତୁ ମୋ ରତନ ରେ ।୨।

ଡରୁ ଅନ୍ଧାର ଘରକୁ ମାଆ ମାଆ ବୋଲି ଡାକୁ
ଭୟେ ହୋଇ ତୁ ଛନ ଛନ ରେ ।୩।

କାଲି ତୋତେ କୋଳେ ଘେନି ଶୋଇଥିଲି ମୁଁ ରଜନୀ
ଦେଖିଲି ମୁଁ ପାପ ସପନ ରେ ।୪।

ଦଣ୍ଡେ ହୋଇଲେ ଉଛୁର ଭୋକେ ହୋଇ ଥର ହର
ବନେ କରିବୁ କି ଭୋଜନ ରେ ।୫।

ଦ୍ୱିଜ ଗୌର କହେ ଦୁଃଖି ଯେବେ ଯିବୁ ବତ୍ସ ରଖି
ତୋ ସଙ୍ଗେ ମୁଁ ଯିବି କାନନ ରେ ।୬।

---

[ ଛପ୍ପାଅଣି ]

**ପୁତ୍ରବତ୍ସଳା ଯଶୋଦା**

ଜୀବଧନ ଘନଶ୍ୟାମ !
ନେତ୍ର ସମ୍ପତ୍ତି ମୋ କାଳଆ ଜହ୍ନ । ନୀଳ ହୀରା ରେ
ମୋ ହୃଦଚଚନ୍ଦନ । ୧ ।

କାଳଠାରୁ ଖାଇନାହୁଁ
ପ୍ରସନ୍ନ ବଦନ ଦିଶିବ କାହୁଁ । ଚନ୍ଦ୍ରାମଣି ରେ
ନଚି ଘଣ୍ଟକରେ ଶୋଉ । ୨ ।

ବଂଶୀ ଅବା କେଉଁ ଗରୁ
ଧଇଲେ ଏ ହାତ ସେ ହାତ କରୁ । କୃଷ୍ଣଚନ୍ଦ୍ର ରେ
ମୋ ପିଲପୂଅ କଟି ସରୁ । ୩ ।

ପୋଏ ଧରଥାନ୍ତୁ ଗିର
ବସ ମୋ କୋଳରେ ଭୋଜନ କର । ବେଣୁପାଣି ରେ
ପରାଣ ଯାଉଛି ଥର । ୪ ।

ଜନନୀ ବାତ୍ସଲ୍ୟ ବାଣୀ
ଶୁଣି ହସହସ ମୁରଲୀପାଣି । ସେ ନୀଳମଣି
ପଦାବ୍ଜେ ଗଉର ଭଣି । ୫ ।

---

[ ସତାଅଶି ]

## ସୁତବତ୍ସଳା ଯଶୋଦା

(ରାଗ ଲଳିତ କାମୋଦୀ ତାଳ ଆଠତାଳୀ)

ରେ ଜୀବଧନ ! କାହିଁକି ତୁ ରଖିବୁ ଗୋଧନ ରେ । ଘୋଷା ।

କେଉଁ ଦ୍ରବ୍ୟ ଅପୂର୍ବ କି ନମିଳଇ ମୋତେ ରେ
ବତ୍ସ ରଖିବାକୁ ବନେ ପଠାଇବି ତୋତେ ରେ । ୧ ।

ଲକ୍ଷେ ଲକ୍ଷେ ରଖୁଆଳ ଅଛନ୍ତି ମୋହର
ଘର ବରତନ ଖାଇ ହୋଇଣ ଗୃହର ରେ । ୨ ।

ବନେ ବୁଲି ବତ୍ସ ଚରାଇବା ବଡ଼ ଦୁଃଖ
ଖରା ବରଷାରେ ଟିକି ଲଭିବେ ନାହିଁ ସୁଖ ରେ । ୩ ।

କାନନେ ବାଘ ଭାଲୁଙ୍କ ଭୟଙ୍କର ବାଣୀ
ଛନ୍ନ ହେବୁ ବାବୁ ତାଙ୍କ ରବ କର୍ଣ୍ଣେ ଶୁଣି ରେ । ୪ ।

ଭୟଙ୍କର ରୂପ ବାଡ଼େ ଶଶ ଲେଖା ଦେଖି
ଡର ମୋ କୋଳରେ ବସି ବୁଜୁ ପର ଆଖି ରେ । ୫ ।

ଖାଲ ଖଣା ଗୋଡ଼ କଣ୍ଟା ଗହନ ବନସ୍ତେ
ସୁକୁମାର ପଦ ତୋର ଗୃଳିବୁ କେମନ୍ତେ ରେ । ୬ ।

ଧଂସୁଲି ତୁଳୀରେ କଦ ନ ମାଡ଼ଇ ତୋତେ
ଲୋଡ଼ିଲେ କି ଶଯ୍ୟା ଆଉ ମିଳିବ ବନସ୍ତେ ରେ । ୭ ।

ତୃଷା କଲେ ତହିଁ ଜଳ ନ ମିଳେ ରେ କହ୍ନା !
କ୍ଷୁଧା କଲେ ଫଳ ମୂଳ ଖାଇବୁ ତୁ ସିନା ରେ । ୮ ।

ଜାଣୁ ଜାଣୁ ଏତେ ଦୁଃଖେ ପେଷିବି ବନକୁ
ସତ କି ମିଛ ମୋ ବାବୁ ! ବୁଝ ତୋ ମନକୁ ରେ । ୯ ।

ଫୁଟିଯାଏ ଆଖି ତୋତେ ନ ଦେଖିଲେ ଦଣ୍ଡେ
ତୁ ଆସିବା ଯାଏଁ ପ୍ରାଣ ଥିବ ଟିକି ପିଣ୍ଡେ ରେ ।୧୦।
ବସ୍ତୁ ରଖିବାରୁ ଧନ ବଢ଼ପଣ ଯେତେ
ନେଉଁନାହିଁ ମୋର କ୍ଷଣେ ନ ଛାଡ଼ିବ ତୋତେ ରେ ।୧୧।
ଗୌର କହେ ଶ୍ରୀମୁଖକୁ ଚାହିଁଥିଲେ ତୋର
କୋଟି ଇନ୍ଦ୍ର ସମ୍ପତ୍ତି ମୁଁ ମଣୁଥାଇ ଛାର ରେ ।୧୨।

———

[ ଅଠାଅଶି ]

## ଯଶୋଦା ପ୍ରବୋଧ

(ରାଗ ମୋହନା ତାଳ ଆଦିତାଳ)

ମାଏ ! କାହିଁପାଇଁ ଗୋ ମନା କରୁଛ ମୋତେ
କୋ ହୋଇ ମୁଁ ତ ବନକୁ ନ ଯିବ
ସଙ୍ଗତରେ ଯିବେ ଗୋପାଳସୁତେ । ଘୋଷା ।
ସୁଦାମ ସୁବଳ ମଧୁମଙ୍ଗଳ
ସର୍ବ ସଖା ହୋଇଥିବୁ ସୁମେଳ
ତ ମଧ୍ୟରେ ଥିବୁ ଦୂରକୁ ନ ଯିବୁ
ପୁରକୁ ଆସିବୁ ଦିବସ ଅନ୍ତେ ।୧।
ଭାଇ ବଳରାମ ଥିବେ ମୋ ସଙ୍ଗେ
ଖେଳ କଉତୁକ କରିବୁ ରଙ୍ଗେ
ସେ ଯମୁନା ତୀର ସେ ଘୋଷ ନଗର
ତହିଁ କଣ ଡର ହୋଇବ ମତେ ।୨।

ସକାଳରୁ ସ୍ନାନ ଭୋଜନ ସାରି
ନଦୀଘାଟରେ ରଖିଥିବୁଁ ବାହୁଡ଼ି
ଦ୍ୱିତୀୟ ଭୋଜନ ପାଇଁକ ଅଶନ-
ସାମଗ୍ରୀ ତ ନେଇଥିବୁଁ ସଙ୍ଗତେ । ୩ ।
ଜନମାଙ୍କ ଅଗ୍ରତରେ ଗୋବନ୍ଦ
କଲେ ଯେତେ ଯେତେ ରୂପେ ଆନନ୍ଦ
କେବେହେଁ ସେ ସବୁ ନ ବୁଝନ୍ତି ପୁଣି
ଗଉର ଚରଣ କହଇ ଗୀତେ । ୪ ।

— — —

[ ଅଣନବେ ]

## ପ୍ରଭାତ ଅବକାଶ

(ରାଗ ସାଗର ତରଙ୍ଗ ତାଳ ପହପଟ)

ଉଠ ଉଠ ବେଣୁ ପାଣି !
ଉଠ ବାବୁ ନୀଳାମ୍ବର ଡାକେ ନନ୍ଦରାଣୀ । ପଦ ।
ରଜନୀ ହୋଇଲା ଶେଷ ଡାକନ୍ତି କୁକ୍କୁଟ
ଶମ୍ଭୁଆଳେ କମ୍ବୁଘୋଷ ହେଲାଣି ପ୍ରକଟ । ୧ ।
ପୂର୍ବଦିଗେ ଦିନମଣି ଉଦୟ ହେଲେଣି
କୁମୁଦ ମୁଦ୍ରିତ ହେଲେ ପଦ୍ମ ଫୁଟିଲେଣି । ୨ ।
ପୁର ଅଗଣାରେ ପୋଏ ପୂରିଲେଣି ଆସି
ନାମ ଧରି ଡାକୁଛନ୍ତି ରାମ ହୃଷୀକେଶି । ୩ ।
ଆହେ ରାମ ! ଆହେ ଶ୍ୟାମ ! ଆହେ ପଦ୍ମଆଖି !
ଉଠ ଉଠ ବେଗେ ଯିବ ପରା ବଛା ରଖି । ୪ ।

ମାତାଙ୍କ ବଚନ ଶୁଣି ଉଠି ବେଣୁଧର
ହେଲେ ଅପହୃତ ଜନମାଙ୍କ ମୁଖ ଚାହିଁ । ୫ ।
ନନ୍ଦାଳୟ ମୋହନ ସୁନ୍ଦର ରୂପ ଦେଖି
ସଫଳ ହୋଇଲା ଦ୍ୱିଜ ଗଉରର ଆଖି । ୬ ।

---

[ନବେ]

## ସୁତବତ୍ସଳା ଜନନୀ

[ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ ବୃତ୍ତ]

ଅଳି ଲଗାଇଲୁ ଧନ ! ବନେ ଯିବା ପାଇଁ
ମୁଁ ଯେତେ କହିଲି ନ ବୁଝିଲୁ ତୁ କହ୍ନାଇ । ଶ୍ୟାମ ସୁନ୍ଦର ରେ ।୧।
ଗ୍ରାମପାଶେ ଥିବୁ ବାବୁ ଦୂରକୁ ନ ଯିବୁ
ଦାମ ସୁବଳ ସୁଦାମ ସଙ୍ଗ ନ ଛାଡ଼ିବୁ । ଶ୍ୟାମ ସୁନ୍ଦର ରେ ।୨।
ଅପରାହ୍ଣ ସମୟକୁ ଚାହିଁ ବସିଥିବି
ଦଣ୍ଡେ ଉଚ୍ଛୁର ହୋଇଲେ ନଷ୍ଟପ୍ରାୟ ମରିବି । ଶ୍ୟାମ ସୁନ୍ଦର ରେ ।୩।
ତୋ ବଂଶୀ ସ୍ୱରକୁ ଧନ ଡେରିଥାଏ କାନ
ତାହା ଶୁଣି ପିଣ୍ଡେ ଧରି ଥାଏ ମୋର ପ୍ରାଣ । ଶ୍ୟାମ ସୁନ୍ଦରରେ ।୪।
ଗୋଧନ ବାହୁଡ଼ା ବେଶ ଦେଖିବାର ଯାଏଁ
ଆହାର ପାଣି ମୋହର ପେଟକୁ ନ ଯାଏ । ଶ୍ୟାମ ସୁନ୍ଦର ରେ ।୫।
ଯାଅ ବାପ ରାମ ସଙ୍ଗେ ହୋଇ ଧରାଧରି
କୁଶଳେ ଆସିବୁ କଳ ଗୋଳ ତୁ ନ କରି । ଶ୍ୟାମ ସୁନ୍ଦର ରେ ।୬

ନଅ ତୋ ଛଡା ପାଞ୍ଚଣି ମୁରଲୀ କଠାଉ
ଗୌର ଦ୍ୱିଜ ବୋଲେ ତୋପଛେ ମୋ ମନ ଥାଉ । ଶ୍ୟାମସୁନ୍ଦର ରେ ॥

---

[ଏକାନବେ]

## ପ୍ରଥମ ବନଗମନ

[ସଖି ! ଆସ ଯିବା ଦେଖି ବୃନ୍ଦା]

ଆଜ କୃଷ୍ଣ ଯିବେ ବନ ଗୋ ସଖି ! କୃଷ୍ଣ ଯିବେ ବନ
ନନ୍ଦ ଯଶୋମତି ଆଜ୍ଞା କରିଛନ୍ତି
ରଖିବେ ବୋଲି ଗୋଧନ ଗୋ ସଖି ! [ଘୋଷା]
ବାଇ ହୋଇଲେ କି ଆମ ରଜାରାଣୀ
ଏମନ୍ତ ବିଗ୍ଭର କଲେ
ଏ କୁମାର ପୁଅଁ କହ୍ନାଇଁକି ବନେ
ପଠାଇ ଦେବେ କା ବୋଲେ ଗୋ ।୧।
ପୁରେ ଥାଉଁ ଥାଉଁ ପରି ନେଲେ ସଜନ
ପଡ଼ୁଥାଇ କେତେ ରିଷ୍ଟ
ଏଣୁର ଶାଳରେ ଅସୁରୁଣୀ ମଲ୍ଲ
ଭଜି ପଡ଼ିଲା ଶକଟ ଗୋ ।୨।
ଉପୁଡ଼ି ପଡ଼ିଲା ଯାମଳା ଅର୍ଜ୍ଜୁନ
ପୁଅକୁ ରଖିଲା ବିଦ୍ଧି
ଏଣୁ ପର କେତେ ବିପତ୍ତି ପଡ଼ୁଛି
ଏହା କି ମନରେ ନାହିଁ ଗୋ ।୩।

ସାତ ପାଞ୍ଚ ନାହିଁ ଏକଇ ନନ୍ଦନ
ସେ ପୁଣି ବାଳୁତ ବଛୁ ।
ସେ ଯା ବନେ ଯିବେ ଗାଈ ଚରାଇବେ
ନନ୍ଦଘରେ କ ନ ଅଛୁ ଗୋ ।୪।
ଲକ୍ଷେ ରଖୁଆଳ ରଖିବା ପାଇଁକ
ନାହିଁ ଅବା କେତେ ଧନ ।
ଗୋପରାଜ ଏଡ଼େ କୃପଣ ହୋଇଲେ
ଦେବା ପାଇଁ ବରତନ ଗୋ ।୫।
ଆମ୍ଭମାନଙ୍କର ଯେତେ ଅଳଙ୍କାର
ବରତନ କରି ଦେବା ।
କୃଷ୍ଣର ପାଲଟେ ଜଣେ ରଖୁଆଳ
ନନ୍ଦଘରେ ରଖାଇବା ଗୋ ।୬।
ଗୌର ଦ୍ୱିଜ ବୋଲେ ଏ କଥା କାହିଁକ
ଶୁଣିନାହିଁ କାହିଁ କାନେ ।
ମାଆ ଭଗବତୀ ସାହା ହେବେ ତାଙ୍କୁ
ଭୟ କାହାକୁ ଗୋ ମନେ ଗୋ ।୭।

———

[ବସ୍ତ୍ରାନବେ]

## ଗୋଚ୍ଚରଣ ବେଶ

(ରାଗ-ତୋଡ଼ି ପରଜ ତାଳ ଏକତାଳ)

[କ ଦେଖିଲ୍ ଆଜ ନେହ ଲେ ସଜନ-ବୃତ୍ତ]

ଦେଖ ସଜନ ଗୋ ! ବନ ଗୋଚ୍ଚରଣ ବେଶ
ସଖାମେଳେ କେଡ଼େ ଶୋଭା ପାଉଛନ୍ତି ବଳରାମ ହୃଷୀକେଶ । ଘୋଷା ।

ସୁଦାମ ସୁବଳ ଶ୍ରୀମଧୁମଙ୍ଗଳ କଙ୍କିଣୀ ଅର୍ଜୁନ ଦାମ
ସ୍ତୋକ ଅନୁଦାମ ଉଜ୍ଜ୍ୱଳ ଶ୍ରୀଦାମ ସୁବାହୁ ଶ୍ରୀବସୁଦାମ ।୧।
ଏହିପରି ଗୋପ ଶିଶୁଗଣ ମେଳେ ଲଉଡ଼ି ଖେଳରେ ରସି
କରନ୍ତି ବଜାଏ ବ୍ରଜସ୍ୱଜ ପୋଏ ବାଇ ଶିଙ୍ଗା ବେଣୁ ବଂଶୀ ।୨।
କାହାର ମସ୍ତକେ ପାଗ ଚଉତନା କାହା ଶିରେ ଜାମୁଡାଳି
କାହା ମସ୍ତକରେ ଉଡ଼େ ପାଟ ନେତ କା ଶିରେ କାଇଞ୍ଚ ମାଳ ।୩।
ଉରେ ଗରଗଣ୍ଡ ଗୁଞ୍ଜମାଳା ଶୋହେ ପୋହଳା ସରକ ସର
ରାମ କୃଷ୍ଣଗଳେ ଚନ୍ଦ୍ରହାରବନ ଦୋହଲଇ କେର କେର ।୪।
ଛତା ପାଞ୍ଚଣି କଟାଉ ଶିକାଛନ୍ଦ ଦଉଡ଼ି ସବୁରି କାଖେ
ଖେମଟା ନାଚରେ ଗୃଳୁଛନ୍ତି ପୋଏ ରାମ ଶାମ ବେନ ପାଖେ ।୫।
କଟି ମାଝେ ଘଣ୍ଟି ଘାଗୁଡ଼ି ବାଜଇ କ ସୁନ୍ଦର ରୁଣଝୁଣ
ଗୌର ଦ୍ୱିଜ ବୋଲେ ବାଜେ ତାଳେ ତାଳେ କହ୍ନାଇଁ ନୂପୁର ଶୁଣ ॥

———

[ତେସ୍ତାନବେ]

ଚୋଟନ ବାହୁଡ଼ା

(ରାଗ-କୁମ୍ଭକେଦାର ତାଳଝୁଲା)

[ଝଗଡ଼ ମାଜ ହେଲ ହେ ଶ୍ୟାମ ବୃତ୍ତେ]

ଦେଖିବ ପରି ଆସ ଗୋ ମିତଣି !
ମଦନ ମୋହନ ଲାବଣ୍ୟ ଠାଣି ଗୋ । ଘୋଷା ।
ଅନୁପମ ଗୃହୁ ମୁରଲୀପାଣି
ବନୁ ଆସୁଛନ୍ତି ଗୋଧନ ଆଣି ।୧।

କ ମଞ୍ଜୁଳ ତାଙ୍କ ବାଙ୍କଗୃହାଣି
ବଲେକ ପଥର ହୋଇବ ପାଣି ।୨।
ପେ.ମନ୍ଥା ନାଠକୁ ଚମାଳବାଣୀ
ଭଲ ମାନୁଥାଇ ପଥରୁହାଣି ।୩।
ହାସ ଚନ୍ଦ୍ରହାସ କର ଉଗୃଣି
ସଙ୍ଗ ଦନ୍ତ ତରୁ ପକାନ୍ତ ହାଣି ।୪।
ଗୋକୁଳେ ଗୋକୁଳେ କାହାର ଆଣି
ଛଡ଼ାଇ ନ ଦେବେ କହ ମିହାଣି ! ।୫।
କେତେ ଶ୍ରମେ କେତେ ସୁରସ ଗୁଣି
କେଉଁ ବନ୍ଧୁ ଅଳ କାହ୍ନୁ ନମିଣି ।୬।
ଗୌର ଦ୍ୱିଜ ବୋଲେ ନାହିଁ କ ଜାଣି
ସେ ନାଗରମଣି ବଣ୍ଟ ବନ୍ଧାଣି ।୭।

———

[ଚଉପଦବେ]

ଗୋଧନ ବାହୁଡ଼ା

(ଝୁଲ ଚଉପଦୀ)

ଦେଖିବ ପର ଆସ ସଖି ! ଶ୍ୟାମ ସୁନ୍ଦର । ଘୋଷା ।
ନୀଳ ନବଘନ ମୁରତସାର କଣ୍ଠେ ଯତନ ରତନହାର
କରେ ବେଣୁ ଧର ଉରେ ବନମାଳୀ ଛନ୍ଦ ସୁନ୍ଦର ।୧।
ଆଗେ ଧେନୁଗଣ ପଛେ ମୁରଲ ଚଉପାଶେ ଗୋପକୁମାରେ ଘେର
ଗୋଧନ ବାହୁଡ଼ା କର ଆସନ୍ତ ବ୍ରଜ ପୁରନ୍ଦର ।୨।

ସୈନ୍ଦ୍ରଣୀ ନନ୍ଦନ ସଙ୍ଗେ ବେଣୁ ବୀଣା ତାଳ ବଜାଇ ରଙ୍ଗେ
ବାଳ ମଧ୍ୟେ ନୃତ୍ୟ କରି ଗାଉଛନ୍ତି କି ସୁନ୍ଦର ।୩।
ଦ୍ୱିଜ ଗଉର କହେ ଗୋ ସଖି ନିର୍ମଳ ହୋଇଲା ଚରମ ଆଖି
ଗୋପ ସୁତ ସଙ୍ଗେ କବା ସିନ୍ଧୁ ମଧ୍ୟେ କୃଷ୍ଣ ନୀଳ ମନ୍ଦର ।୪।

---

[ପଞ୍ଚାନନବେ]

## ଗୋଧନ ବାହୁଡ଼ା

ପ୍ରିୟଆଳି ! ଅନା ବନମାଳୀ ଆସେ ଧେନୁ ଗୃହକୁ ଗୋ । ଘୋଷା ।

ସୁବଳ କନ୍ଧରେ ହସ୍ତ କି ରଙ୍ଗରେ କରି ନ୍ୟସ୍ତ
ଗାଉଛନ୍ତି ମୁରଲୀ ଗୀତ ସଧେ ତୋର ଚିତ୍ତହରି
ହରିଣୀଆ ମରକତମାଳୀ ଗୋ ।୧।
ଡାହାଣେ ବ୍ରଜପୌଂହଳୀ ଚୌଦିଗେ ସଖାମଣ୍ଡଳ
ଚାଲୁଛନ୍ତି ଢଳ ଢଳ ନୃତ୍ୟ ରସରେ କି ଭଳ
ଗୋପପୋଏ ମାରି କରତାଳ ଗୋ ।୨।
କେ ବାଏ ଶିଙ୍ଗା ବଇଁଶୀ କେହୁ ଭେରୀ ବାଏ ରସି
କେ ତୂରୀ ବାଉଛନ୍ତି ହସି କେ ମହୁରୀ ସ୍ୱରେ ଖୁସି
କେହୁ ବାଏ ପଟହକାହାଳୀ ଗୋ ।୩।
ଗୋଧନ ବାହୁଡ଼ା ଛବି କି ମନୋହର ଦିଶଇ
ଧବଳୀ ଶାମଳୀ ଗାଈ ପଛରେ ଘର କହ୍ନାଇ
ଭାଷେ ଗୌର ପ୍ରେମଅଶ୍ରୁ ଢଳ ଗୋ ।୪।

---

[ଛାୟାନଟେ]

## ଗୋ ଚାରଣ ବେଶ

[ପ୍ରିୟ ସଖି ଗୁପ୍ତ ପଥର କଲଣି ସଖି ସହି ବୃତ୍ତ]

ପ୍ରିୟ ଆଳି ! ଅନା ଗୋଠଗୋଷ୍ଠକୁ ବିଜେ ବନମାଳୀ । ଘୋଷା ।
ସୁବଳ ସ୍କନ୍ଧରେ ଭୁଜଭର ଦତ୍ତ କରି ଚିତ୍ତବିତ୍ତଚୋର
ଜଳ କ ବଧିରେ ଚଳନ୍ତି ସଧୀରେ
ଆଗେ ଧେନୁବତ୍ସା ବୃନ୍ଦ ଚଳି ।୧।
ମଦନ ସୁନ୍ଦର ଗୋପଶଶୀ ମଧୁର ସୁସ୍ୱର ବାଇ ବଂଶୀ
ଶିଶୁଗଣ ମେଳେ ନାଚି କୁତୂହଳେ
ସଖାଧୃତ ଦେଉଛନ୍ତି ତାଳି ।୨।
ଶିରେ ବାଙ୍କଚୂଳ କି ସୁନ୍ଦର ତହିଁ ରୁଞ୍ଜ ଗୁଞ୍ଜ ମୋତିହାର
ଗଳେ ଦୋଳେ ସ୍ୱର୍ଣ୍ଣତୁଳସୀମାଳିକା
ସୁଗନ୍ଧ ଉଡନ୍ତି ଅଳିଆଳି ।୩।
କଟୀକି ଶୋଭିତ ପୀତଧଟୀ ତହିଁପରେ ହେମ କ୍ଷୁଦ୍ର ଘଣ୍ଟି
ମୃଦୁ ମଞ୍ଜୁ ସ୍ୱରେ କର୍ଣ୍ଣ ମନ ହରେ
ଶ୍ରୀପଦ ବାଜେଣୀ ବଳା ଚଳି ।୪।
ବନ ମାଳାମ୍ବୁଜ ଶ୍ରୀଅଙ୍ଗ ଟି କେମନ ଲାବଣ୍ୟ ପରିପାଟୀ
ହରିଚନ୍ଦନ ଆମୋଦିଆ ମୋହନେ
କେ ନ ଦେବ ମନ ପ୍ରାଣ ଢାଳି ।୫।
ବ୍ରଜ ବଧୂ ପଦ୍ମ ମଧୁକର ନବୀନ କିଶୋର ନଟବର
ଛନ୍ଦକି ମୟୂର ଚନ୍ଦ୍ରି ନିରନ୍ତର
ଗୌର ଦ୍ୱିଜେ କରେ ନିଜଗୁଳ ।୬।

---

[ସତାନବେ]

## ଗୋଧନ ବାହୁଡ଼ା

(ରାଗ ତୋଡ଼ିପରଜ ତାଳ ଝୁଲ୍ )

[ଦେଖ ସଜନୀ ଗୋ ବନ ଗୋଚାରଣ ବେଶ ବୃନ୍ଦ]

ଶୋଭ ଦାଣ୍ଡରେ ଗୋ ! ଶ୍ରୀକୃଷ୍ଣଚନ୍ଦ୍ର ବଳଦେବ
ଚାରି ପାର୍ଶ୍ୱରେ ବେଢ଼ି ଚାଲୁଛନ୍ତି ସୁକୁମାର ଗୋପ ପୋଏ ॥
ସୁଦାମ ସୁବଳ ଶ୍ରୀମଧୁମଙ୍ଗଳ ଦାମ ଶ୍ରୀଦାମ ଅର୍ଜୁନ
ଉଜ୍ଜ୍ୱଳ ସୁବାହୁ ସ୍ତୋକ ଅନୁଦାମ ଯେତେ ବ୍ରଜ ଶିଶୁଗଣ ।୧।
ଶିଙ୍ଗା ଭେରୀ ତୁରୀ ପଚର କାହାଳୀ କା ହାତେ ବେଣୁ ବଇଂଶି
ସୁସ୍ୱରେ ବଜାଇ ତା ତା ଥେଇ ଥେଇ ନାଚନ୍ତି କ ରଙ୍ଗେ ହସି ।୨।
ଆଗରେ ଗୋଧନ ପଲକୁ ଅଡ଼ାଇ ଢମାଳି ଗୀତ ଗାଯ଼ନେ
ଛଳ ଛଳ ଚଳ ଆସୁଛନ୍ତି ଅନା କ ଶୋଭା ଗଜ ଅଯ଼ନେ ।୩।
ଗୌର ଦ୍ୱିଜ ବୋଲେ ଧନ୍ୟ କହ୍ନାଇଙ୍କ ଗୋଧନ ବାହୁଡ଼ା ବେଶ
ନଯ଼ନ ସାର୍ଥକ ହୋଇଲା ମୋହର ଦେଖି ରାମ ହୃଷୀକେଶ ।୪।

———

[ଅଠାନବେ]

## ଗୋପୀରଚନା

ନଷ୍ଟେ ନନ୍ଦସୁତ ଜାତି ମହତ ବୁଡ଼ାଇବ ।
ସତୀଧର୍ମଧ୍ୱଂସବାନା ଜଗତେ ଉଡ଼ାଇବ । ପଦ ।
ଦିନକୁ ଦିନ ଅନେକ ପୀରତି ବଢାଇବ
ଅଚାନକରେ ସୂଚକୁଚନୁକୁ ସତାଇବ । ୧ ।

ଦେଖାଇ ନାଗର ଭଙ୍ଗୀ ଚିତ୍ତକୁ ଜଡ଼ାଇବ
ଅନ୍ତପୁର ଅଙ୍ଗନାକୁ ଅମଡ଼ା ମଡ଼ାଇବ । ୨ ।
ବଜାଇ ମୁରଲୀ କୁଞ୍ଜବନକୁ କଢ଼ାଇବ
କୁସୁମ ଶେଯେ କର୍ପୂର ଧୂଳିରେ ଗଡ଼ାଇବ । ୩ ।
ଆବର ନାରୀଙ୍କ ଦମ୍ଭଗ୍ଲାବର ଛଡ଼ାଇବ
ଗୋକୁଳ ନାରୀଙ୍କ ଅଙ୍ଗ ଦୁକୂଳ ଫେଡ଼ାଇବ । ୪ ।
ଗୌର ଦ୍ୱିଜ କହେ ଜାନୁପାଦପେ ଚଢ଼ାଇବ
ବଶିଖବଷ ବରହ ମନ୍ତ୍ର ପଢ଼ାଇବ । ୫ ।

—୦—

[ଅନେଶ୍ୱତ]

ଗୋପୀଙ୍କ ଭବନା ।

କେ ସହିବ ଆଜ ନନ୍ଦ ତନୟୁ ଦାଉ ଏ ଗୋ ମା । ଘୋଷା ।

କେ କାହିଁ ନ ଯିବ ଘର ଜଗିଥିବ
ବାହାର ନୋହିବ କେଣେ
ଯେବେ ଯିବ ତେବେ ଆସିଲା ବେଳକୁ
ହୁର ମଡ଼ଥାଏ ଏଣେ ।୧।

ଲୁଚ ଲୁଚ ଯାଇ ମନ୍ଦରେ ପଶଇ
ଗନ୍ଧି ଘରେ ଥାଇ ବସି
କାହିଁ ଗଲା ବୋଲ ଖୋଜିଲା ବେଳକୁ
କ ଛନ୍ଦେ ଯାଏ ଖସି ।୨।

କେ ବୋଲଇ ଶୁଣ        କାଳିଆର ଗୁଣ
        କାଲ ମୋ ପୁରକୁ ଗଲା
କରେ ରଜ୍ଜୁ ଛନ୍ଦ        ମୋ ପୁଅକୁ ବାନ୍ଧ
        ବାଡ଼ ବାଟେ ପଳାଇଲା ।୩।

କେହୁ ଆଗ ବଢ଼ି        ବୋଲେ ମୋର ଶାଢ଼ୀ
        ଚିରିଦେଲା ନନ୍ଦପୁଅ
ମନକୁ ମନ ମୁଁ        ଯେତେ ବୁଝାଇଲି
        ନେତ୍ର ରହୁନାହିଁ ଲୁହ ।୪।

କେ ବୋଲେ ମିତଣି !        ଗଲି ପାଣି ଆଣି
        କେମନ୍ତେ ଅନାଇଁ ଥିଲି
ଏଡ଼େ ଦୁରୁଦଣ୍ଡ        ଭାଙ୍ଗି ଘୃତଭାଣ୍ଡ
        ଆସୁ ଆସୁ ପଳାଇଲା ।୫।

ଦଧି ଦୁଧ ସର        ଜୀବନ୍ତା ଆମ୍ଭର
        ସେ ଯେବେ ହୋଇବ ନାଶ
କାହାକୁ କହିବା        କେମନ୍ତେ ସହିବା
        ଗୋପରେ କରିବା ବାସ ।୬।

ଗାଳି ତ ନ ଦେବା        ମାଡ଼ ନ ମାରିବା
        ସେ ତ ବ୍ରଜ ରାଜ ସୁତ
ଏ ବଚନ ଶୁଣି        କେଉଁ ଗୋପୀ ଭଣି
        ଯାହା କହିଲ ଏ ସତ ।୭।

କହେ ଦ୍ୱିଜ ଗୌର        କାହିଁ ପାଇଁ ଡର
        ରାଣୀକି କହିବା ଆସ

ଯେବେ ନ ବୁଝିବେ ଗୁଡାଣ୍ଡ ଆମ୍ଭର
ଏଠାରୁ ଭାଙ୍ଗିବା ବାସ ।୮।

———

[ଶତଦ୍ଧ]

## ରୂପାନୁରାଗ

[ଭଲ ଭୁଲିଲୁ ତା ପ୍ରୀତିରେ ପ୍ରାଣସଙ୍ଗିନ ବୃତ୍ତ]

କି ଶୋଭା ନନ୍ଦ ନନ୍ଦନ ଗୋ ଅନା ମୋ ଧନ ! । ଘୋଷା ।

ପ୍ରସନ୍ନ କାଳିଆ ଜହ୍ନ ଶ୍ରୀମୁଖ ନବ ଲାବଣ୍ୟ
କରେ ଆନନ୍ଦ ବର୍ଦ୍ଧନ ଗୋ ।୧।

ମନ୍ଦ ଦୃଷ୍ଟିର ନୟନ ସଜ ନଳିନ ନନ୍ଦନ
ଅନୁପମ ଅପଘନ ଗୋ ।୨।

ମତ୍ତ କରୀନ୍ଦ୍ର ଗମନ ଚନ୍ଦ୍ରୀ ମଧୁର ନର୍ତ୍ତନ
କରଇ ବଂଶୀ ବାଦନ ଗୋ ।୩।

ସଖା କହେ କି ବଚନ କମଳ କରମଣ୍ଡନ
ଆଗରେ ବଧୁା ଗୋଧନ ଗୋ ।୪।

ଦାମ ସୁଦାମ ଶ୍ରୀଦାମ ଅନୁଦାମ ବସୁଦାମ
ଶିଶୁ ବ୍ରଜ ହୃଷ୍ଟ ମନ ଗୋ ।୫।

ଧବଳୀ ଶ୍ୟାମଳୀ କାଳୀ ନେଉଳୀ ବଉଳୀ ବୋଲି
ଡାକ ଅତ୍ରାନ୍ତ ମୋହନ ଗୋ ।୬।

ଗୋଧନ ବାହୁଡ଼ା ବେଶ ବଳସନ ହୃଷୀକେଶ
ମୋହୁଛନ୍ତି ତ୍ରିଭୁବନ ଗୋ ।୭।

ଶୌରିହରିକ ବୋଲେ ସନ୍ତ ! ଆଜ ଧନ୍ୟ ମୁଁ ହେଲଇଁ
ନେହେ କର ଦରଶନ ଗୋ ।୮।

———

[ଛନ୍ଦ ଏକ]

## ଗୋପୀ ଭାବନା

(କାହିଁ ଗଲେ ମୁରଲୀ ଫୁଙ୍କା ବୃତ୍ତ)

ନବଘନ କାଳିଆ ଚାନ୍ଦ ଭୁରୁଲତା ନଚାଇ ଚାହିଁଲାଣି ତ
ନଗର ବଧୂସରି ନାଗରୀ ମାନଙ୍କୁ
ନବରଙ୍ଗ ବାଣୀ କହିଲାଣି ତ । ଘୋଷା ।
ବାନ୍ଧିଲାଣି ପଡ଼ନେ ଚୂଳ ପିନ୍ଧିଲାଣି ପୀତ ଦୁକୂଳ ଗୋ
ସେ ନନ୍ଦବାଳ
କୁଳବଧୂ କୁଳ ବୁଡ଼ାଇବା ପାଇଁ
ଢମାଳିଆ ଗୀତ ଗାଇଲାଣି ତ ।୧।
ନ ଜାଣିଲା ପରପ୍ରେ ହୋଇ ନାରୀଙ୍କର ପାଶେ ମିଳଇ
ସେ କଳାକହ୍ନାଇ
ପରିହାସ ବାଣୀ ଶୁଣିବା ପାଇଁକ
କର୍ଣ୍ଣ ଡେରି କରି ରହିଲାଣି ତ ।୨।
ବାଳମେଳେ ଖେଳ କୌତୁକ ଛନ୍ଦି ସେହିନାହିଁ ଅଧିକ
ସେ ରସରଙ୍ଗ
ଆରମ୍ଭରେ ତାର ସଙ୍ଗ ଥାଇ ଆନ
ଆନ ଭାବ ହୃଦେ ବହିଲାଣି ତ ।୩।

ଅଙ୍ଗଦେଶେ ଅନଙ୍ଗ ତାର ଜଣାଗଲା କଲାଣି ଘର
ମନେ ବହ୍ନର
ଏକା ହୋଇ ତାର ପାଶକୁ ଯିବାକୁ
ବଳା ହୃଦପୁରେ ରହିଲାଣିତ ।୪।
ଗୌର ଦ୍ୱିଜ କହେ ଗୋ ଆଳି ! ଅଳ୍ପଦିନ ଥାଅ ସମ୍ଭାଳି
ବରଜବାଳି !
କେଳି ରଚିବାକୁ କୁଞ୍ଜେ ବଞ୍ଚିବାକୁ
ଅନୁକୂଳ ଆସି ହୋଇଲାଣି ତ ।୫।

———

[ଶଙ୍କରାଭରଣ]

## ଗୋପୀ ବଚନ

[କାଳିନ୍ଦୀ କୂଳକୁ ମୋ ସଖୀଲୋ ନ ଯା ବୃତ୍ତ]

ନନ୍ଦ ସୁତ ମନ୍ମଥକୁ ବୁଡ଼ାଇବ ଗୋ
ସଖି ଧୂର୍ତ୍ତ ଧ୍ୱଂସ ବାନା ଉଡ଼ାଇବ ଗୋ । ଘୋଷା ।
ଦିନକୁ ଦିନ ଅନେକ ପୀରତି ବଢ଼ାଇବ
ଅତନୁଶରେ ତନୁକୁ ସଢ଼ାଇବ ଗୋ ।୧।
ଦେଖାଇ ନାଗର ଭଙ୍ଗି ଚିତ୍ତକୁ ଜଡ଼ାଇବ
ଅନ୍ତଃପୁରରୁ ଅମଡ଼ା ମଡ଼ାଇବ ଗୋ
ବଜାଇ ମୁରଲୀ କୁଞ୍ଜ ବନକୁ କଢ଼ାଇବ
କୁସୁମ ଶେଯରେ ନିତ ଗଡ଼ାଇବ ଗୋ ।୨।

ଆବର ନାସାଙ୍କ ଦମ୍ଭ ଘ୍ରାବର ଚଢ଼ାଇବ ।
ଅଙ୍ଗ ଦୁକୂଳ କାଞ୍ଚନ ଫେଡ଼ାଇବ ଗୋ ।୪।
ଗୌର ଦ୍ୱିଜ କହେ ଜାନୁ ପାଦପେ ଚଢ଼ାଇବ
ବଣିଖ ବଷ ମନ୍ତ୍ରର ପଢ଼ାଇବ ଗୋ ।୫।

———

[ଶହେ ଛଅ]

ଗୋପୀ ଭାବନା

(ରାଗ ମାଳଶ୍ରୀ ପଦ୍ମପଞ୍ଚ)

କେ ବୋଲେ ସଙ୍ଗାତ ! ବ୍ରଜରାଜ ସୁତ
ଆଜ ତ ବଷମ ଛବ ଗୋ
ଦେଖି ଏ ଆରମ୍ଭ ରହିବ କ ଦମ୍ଭ
ଦବ ହେଲେ ଯିବ ଦ୍ରବ ଗୋ
ପଶୁ ଦେଖି କ ମୂର୍ଚ୍ଛିବେ
ସୁରନାରୀ ସୁରତ ଇଚ୍ଛିବେ ଗୋ ।୧।
ଚମ୍ପା ଜାତି ଯୂଥି ମାଧବୀ ମାଳତୀ
ମିଶାଇ ବାନ୍ଧିଛୁ ଜୂଡ଼ା ଗୋ
ତାର ଉପରକୁ ବରହୀ ଚନ୍ଦ୍ରିକା
କୁଳବତୀ କୁଳବୁଡ଼ା ଗୋ
କର୍ଣ୍ଣେ ମକରକୁଣ୍ଡଳ
ମଣ୍ଡି ଦେଉଛୁ ଗଣ୍ଡ ମଣ୍ଡଳ ଗୋ ।୨।

ଲଲାଟେ କସ୍ତୂରୀ ତିଳକ ଅଳକ
ଚଳକୁ ଚୂର୍ଣ୍ଣ କୁନ୍ତଳ
ମୁଖାରବିନ୍ଦକୁ ବେଢ଼ି ରହିଛନ୍ତି
କି ଅବା ଭ୍ରମର ମାଳ ଗୋ
ବଙ୍କ କଟାକ୍ଷ ସୁହାଣି
ନାଗ୍ନ ଲଜ ପକାଉଛୁ ହାଣି ଗୋ ୩।
ତିଳ ପ୍ରସୂନ ନାସିକା ମନୋହର
ଗଜ ମୋତିବର ଶୋହେ ଗୋ
ବିମ୍ବାଧରେ ସ୍ମିତ ହାସ ବିକଶିତ
ଜଗଜ୍ଜନ ମନ ମୋହେ ଗୋ
ଉରେ ହାର ସୁପଦକ
ଦେଖି ହୃଦ ହୁଏ ଦକ ଦକ ଗୋ ।୪।
ସୁବାହୁ ମୃଣାଳ ଜିଣି ପଦ୍ମନାଳ
ବାହୁଟି କଙ୍କଣ ସାର ଗୋ
କଣ୍ଠଠାରୁ ଜାନୁ ଯାଏ ଲମ୍ବିଅଛୁ
ଶ୍ରୀବଇଜୟନ୍ତୀ ହାର ଗୋ
ପରିଧାନ ପୀତପଟ
କେଳି କଦମ୍ବ ମୂଳ ଲମ୍ପଟ ଗୋ ।୫।
ଶ୍ରୀବତ୍ସ ଲକ୍ଷଣ ଅତି ବିଚକ୍ଷଣ
ଦକ୍ଷିଣାଙ୍ଗେ ଯାଏ ଦେଖା ଗୋ
ମାନ ମରକତ ଶିଳର ଯେମନ୍ତ
ବାମେ ସୁବର୍ଣ୍ଣ ରେଖା ଗୋ
କଟୀ କେଶରୀକୁ ଝୁଣ୍ଟ
ଗତକର୍ଣ୍ଣ କି ସିଦ୍ଧ ଉତ୍ତୁର ଶୋ ।୬।

ରଙ୍ଗିମା ଅରୁଣ ଭଙ୍ଗିମାକୁ ପୁଣ
କ ଉପମା ଦେବା ଛନ୍ଦେ ଗୋ
ଚଉଦ ବ୍ରହ୍ମାଣ୍ଡ ଶୋଭାଯାକ ରୁଣ୍ଡ
କଲେହେଁ ନ ଅଣ୍ଟେ ପନ୍ଦେ ଗୋ।
ପାଦେ ଜଡ଼ିତ ନୂପୁର
ନାଦେ କମ୍ପଯାଏ ତିନ ପୁର ଗୋ ।୭।
ବ୍ରଜ ଯୁବବଜ ହେଲ୍ପ୍ରାପ୍ତ ଆଜ
ପ୍ରତେ ହେଉଛୁ ମୋ ମନେ ଗୋ
ଛନ୍ଦ ଚାମର ଅମ୍ବର କରେ ଧର
କଯୋଗିଆ ସଖାମାନେ ଗୋ
କଣ୍ଟେ ପାଦ ଏ ସୁବଳ
ସଖପଣ୍ଡା କ ମଧୁମଙ୍ଗଳ ଗୋ ।୮।
କେଉଁ ମଦାଳସୀ ମନ୍ଦେ ସ୍ୱଷେ ହସି
କ ଙ୍ଗା ଏ ମୀନକେତନ ଗୋ
ବସନ୍ତ ଉଛବ ଯାହା କରବାକୁ
ବଜେ କଲ ବୃନ୍ଦାବନ ଗୋ
ସଙ୍ଗେ ଧେନ ସଖାକୂଳ
ନୀପ ମୂଳେ କଲ ଅନୁକୂଳ ଗୋ ।୯।
ବସନ୍ତ କୋକଳ ଚାର ଅଙ୍ଗବଳ
ବାମ ଦକ୍ଷିଣରେ ସ୍ଥିତ ଗୋ
ବିମାନ ଆବେଷ୍ଟ ଖୋଜୁଛୁ ବରସ୍ତ୍ରୀ
ନାଶ କରବାକୁ ହତ ଗୋ
କହେ କେବଣ ନାୟିକା
ରତ ବନା ସେ ଭ୍ରମୁଛୁ ଏକା ଗୋ ।୧୦।

କେ ଛଇଳୀ ଭାବେ ମନକୁ ନ ଆସେ
ତୁ ଯାହା ଉପମା ଦେଲୁ ଗୋ
ଶ୍ୟାମ ହଙ୍ଗେ ସମ କରିବାକୁ କାମ
ନାମକୁ ସାର୍ଥକ କଲୁ ଗୋ
କାହିଁ ହେବ ସେ ସମାନ
ଯାର ନାମ ମଦନମୋହନ ଗୋ ।୧୧।
ଆଜ କେଉଁ ବାଳୀ ମନେ ମନେ ଭାଳ
ବୋଇଲୁ ଶୁଣ ମିଛଣି ! ଗୋ
ଏ ରସାର ସାର କରଣ ବାହାର
ଠୁଳ କଲୁ ଏଥି ଆଣି ଗୋ
ବଡ଼ କୌତୁକୀ ବରଞ୍ଜ
ଏ କାଳକୁ ଏ ବିବାଦ ରଚ ଗୋ ।୧୨।
ତପନ ନନ୍ଦିନୀ ଜଗତ ବନ୍ଦିନୀ
ପ୍ରେମତରଙ୍ଗିଣୀ ଘାଟ ଗୋ
ଦେଖି ତାର ତଟେ କଦମ୍ବ ନିକଟେ
ବସାଇଛୁ ପ୍ରେମହାଟ ଗୋ
ଶୋଭା ସମ୍ପତ୍ତି ବଜାର
ସୁବଳାଦି ସଖା ବଣିଜାର ଗୋ ।୧୩।
ରୂପକୁ ତୁଲାଇ ଦେବାକୁ ମୁଲାଇ
ଗ୍ରାହକ ନୋହିଲେ ସହୁଁ ଗୋ
ଧନୀ ନାମ ଶୁଣି ବାଟ ତା ବଣାଣି
ଗୋପକୁ ଆଣିଲୁ ଚହୁଁ ଗୋ
ଦଣ୍ଡି କାଠେ ମାପଡାଳ
ଦୋଳ ପାଶରେ କରୁଛୁ ଭୁଲ ଗୋ ।୧୪।

ଗୌର ଦ୍ୱିଜ ଭଣି ହେ ବ୍ରଜ ରମଣି !
ଏ ମାଳ ରଚନ ମଣ ଗୋ
ତୁମ୍ଭେ ଭାଗ୍ୟବତୀ ଯୌବନ ସମ୍ପତ୍ତି
ଦେଇ ନଅ ବେଗେ କଣି ଗୋ।
ତୁମ୍ଭ ଉରଜ କନ୍ଦରେ
ସେ ସ୍ଥଳକୁ ଏ ହେବ ସୁନ୍ଦର ଗୋ ।୧୫।

---

[ ଦେଶ ସ୍ୱର ]

ରୂପାନୁରାଗ

[ ରାଧେ ତୋ'ହଲାଗି ଶ୍ୟାମ କ ବଞ୍ଚଇ ଗୋ ଜେମାଦେଇ ! ବୃତ୍ତ ]
ମିତ ଅନା ! ଦର୍ଶ କ ସୁନ୍ଦର
ଏ ନନ୍ଦର କହ୍ନା ଗୋ । ଘୋଷା ।
ମସ୍ତକେ ବରହି ବରହ ମୁକୁଟ
ନାନା ପୁଷ୍ପେ ବେଢ଼ା ସୁଗନ୍ଧ ପ୍ରକଟ
ବୈଜୟନ୍ତୀ ବନମାଳ ହୃଦତଟ
ଦୋଳେ କ ରଙ୍ଗେ ସୁମନା ଗୋ ।୧।
କଟୀ ଦେଶରେ ତା ସ୍ୱଚ୍ଛ ପୀତପଟ
କଳାଘନେ କ ଚଞ୍ଚଳା ଝଟଝଟ
କର୍ଣ୍ଣ ଯୁଗେ କର୍ଣ୍ଣିକାର ସୁ ଲଲାଟେ—
ପଟେଟ ବନ୍ଦ ଗୋରଚନା ଗୋ ।୨।
ଖଣ୍ଡ ଚନ୍ଦ୍ରୋଜ୍ଜ୍ୱଳ ଶ୍ରୀଗଣ୍ଡମଣ୍ଡଳେ
ରତନ ମକର କୁଣ୍ଡଳ ଗୋ ଖେଳେ

ମୋହନ ମୁରଲୀ ତୁମ୍ଭେ ବମ୍ବାଧରେ
କି ମନେ କରି ଭାବନା ଗୋ ।୩।
ଚରଣେ ରୁଣିତ ବାଜେଣି ନୂପୁର
ଝୁମୁ ଝୁମୁ ନାଦେ ମୋହଇ ହି ପୁର
ସତୀ ପତିବ୍ରତା ମତି କରେ ଜୁର
ଧନ୍ୟ ସେ କାଳିଆସୁନା ଗୋ ।୪।
ପୁଷ୍ପିତ କଦମ୍ବ ମୂଳେ ହୋଇ ଉଭ
ପ୍ରକାଶେ କୋଟି ଅନଙ୍ଗ ପ୍ରଭା ଆଭା
ଗୌର ଦ୍ୱିଜ ବୋଲେ ତୁମ୍ଭେ ତା ବଲ୍ଲଭ—
ପଣକୁ ଘଟଣା ସିନା ଗୋ ।୫।

———

[ଶବ୍ଦ ପାଞ୍ଚ]

## ରୂପାନୁରାଗ

(ରାଗ ତୋଡ଼ିପରଜ ତାଳ ଆଡ଼ତାଳ)

ଅନା ରେ ମନାନନ୍ଦ ଛବିକି
ତୂନା କରେ ସତୀ ମତି ପବିକି ॥
ସେ ବଙ୍କାମୂରତି ଶ୍ୟାମ ସୁନ୍ଦର
ନତି ନତି କରେ ନୂଆ ହୃଦର ।୧।
ଅଖିଳ ବରଜ ପୁରେ ଗୋ ଏହି
ରଖି ଦେବ ନାହିଁ ସୁବଣ୍ଟି ଗୋଷ୍ଠି ।୨।
ଅଙ୍ଗ ଭଙ୍ଗୀ ଛଟା ହସ ଗୃହାଁଣି
ମୁଗୁନ ପଥର କରଇ ପାଣି ।୩।

କ ସୁର ସେ ମାର   ଶୋଭ୍ସ ଗୋ ମିତ
ଏ ରୂପ ଦେଖିଲେ ହେବ ମୋହିତ ।୪।
ନଗାନ   ନଟନ   ମୋହନ   ବେଶ
ସ୍ଵର୍ଗେ କେ ନୋହିବ ସ୍ଵବେ ଆବେଶ ।୫।
ତାକୁରୁ   ତଳପା   ସରକ   ସମା
ତୁଚ୍ଛ ହେବେ   ପବ   ସବ ଉପମା ।୬।
ଗୌର ଦ୍ଵିଜ  ବୋଲେ ସମ ହେତୁରେ
ଖୋଜିଲେ ନ ଥିବ ଚଉଦ ପୁରେ ।୭।

—————

[ଶଦେ ଛଅ]

## ରୂପାନୁରାଗ

(କ ନାମ ବୋଇଲୁ ଶୁଣ ଗୋ ଲଳିତେ ବୃତ୍ତ)

କଦମ୍ବ   ଶ୍ରୀମଣି   ଦେଖ   ଆଗୋ   ଦୂତ
   କଦମ୍ବ   ମୂଳେ   ଘନକୁ
ଲଳିତା   ଭାରଣି   ଘନ   ନୁହେ   ସତ
   ସ୍ଵହଁ   ନନ୍ଦନନ୍ଦନକୁ । ଘୋଷା ।
ରସବନ୍ତି   କହି   ଘନ   ଯେବେ   ନୋହି
   ବରଷୁଛି   ତ   ଜଳକୁ
ଲଳିତା ବୋଲଇ   ବାରଦ ,   ନୁହଇ
   କୃଷ୍ଣଙ୍କ   ଏ   ତଳକୁ ।୧।

ସଖି ରସମୟୀ ମେଘ ଯେବେ ନୋହୁ
ଶୁଣ ଅଶନ ସ୍ୱନକୁ
ଲଳିତା ବଦନ୍ତି କୃଷ୍ଣ ବଂଶୀଗୀତ
ନ ଶୁଭେ କ ତୋ କର୍ଣ୍ଣକୁ ।୨।

ଚମ୍ପକଶୋଭା କହୁ ଆରେ ପ୍ରିୟସହୁ
ଦେଖ ବକୁଳ ମାଳକୁ
ଚମ୍ପ . କହେ ଆଳୀ ନୁହେ ସେ ବକୁଳ
କୃଷ୍ଣର ମୋତିମାଳକୁ ।୩।

ହସେ ଚନୋଦ୍ଗମା ଅନା ଲୋ ମିତଣି
ସୁନ୍ଦର ଇନ୍ଦ୍ରଧନୁକୁ
ଧନ୍ୟତମା ଭଣି କୃଷ୍ଣ ଚୂଳେ ମଣି
ଗୁଞ୍ଜରା ଶିଖିପୁଚ୍ଛକୁ ।୪।

ରାଧିକା ଭଣନ୍ତି ଅନା ବକପନ୍ତି
ନୀପଚଳ ଗଗନକୁ
ପ୍ରିୟ ସଖୀ କହେ ବକପନ୍ତି ନୁହେ
କୃଷ୍ଣ ଝୀନ ବସନକୁ ।୫।

ଭଣି କୃଷ୍ଣପ୍ରିୟା ଥରୁଛି . ମୋ ହିଆ
ଦେଖି ସଖି ! ଏମାନଙ୍କୁ
ଗୌର ଦ୍ୱିଜ ଭଣେ ଭୁଲିଯିବା ବାସେ
ଗୃହଁ ।ନା ନୀପ ମୂଳକୁ ।୬।

[ଶବ୍ଦ ସାତ]

## ରୂପାନୁରାଗ

ଏଣୀନୟନାରେ ! ବାରେ ଚାହାଁ ତୁ ଏଣିକି
ଛଇଳ ନଟ ନାଗରମୁକୁଟମଣିକି । ଘୋଷା ।

ଯେ ଦେଖିବ ଥରେ ତା କଟାକ୍ଷସନ୍ଧାଣିକି
ଥିର ନ ପାଇବ ରଖି ପାରିବ ଆଖିକି ।୧।

ଶୁଣିଲେ ଥରେ ତାହାର ଇଙ୍ଗିତ ବାଣୀକି
ପତିବ୍ରତା ଧର୍ମ ଫିଙ୍ଗିଦେବ ସେ ପାଣିକି ।୨।

ଏ ସଂସାର ଶୋଭାସାର ସମ୍ପତ୍ତି ଗୁଣିକି
ବ୍ରହ୍ମର ଗୃହଆନନ ଅଛନ୍ତି ନିର୍ମାଣି କି ।୩।

ଧନ୍ୟ ବୋଲିବା ଏ ରୂପଗଢ଼ା ବିଧାଣିକି
ରସେ ରସାଣି ଦେଇଛନ୍ତି ପୀୟୂଷ ଗୁଣି କି ।୪।

ରବି ପୂଜା ସୁକୃତ ତୋ ଫଳିଲା ଏଣିକି
ଆଣି ଜଗତେ ଲମ୍ଭା ମିଳ ରତନ ମଣିକି ।୫।

ଗୌର ଦ୍ୱିଜ ଭଣେ ରାଧେ ! ଶୁଣ ମୋ ବାଣୀକି
ଆଉ ଦିନେ ନ ରୁଷିବୁ ମୁରଲୀପାଣିକି ।୬।

———

[ଶବ୍ଦ ଆଠ]

## ରୂପାନୁରାଗ

(ରାଗ କିରବାଣୀ ତାଳ ମିଶ୍ରରୂପ)

[ମନେ ପଡ଼ୁଛି ମାଁ ! ସେହି ଚନ୍ଦ୍ରମୁଖ ବୃତ୍ତ]

ଆଜ ମୁଁ ଦେଖିଲି ଲୋ ମୋହନ ମୂର୍ତ୍ତିକି । ଘୋଷା ।

ନାଟନେ ପଡ଼ିବରତ ଦକ୍ଷ ଯେ ଅନବରତ
ଅଭିନବ ମରକତ ରତନ କାନ୍ତିକି ।୧।

ମାପମୂଳେ ନକାଞ୍ଚନେ ଉଷ୍ଣଶଥିଲେ ଯତନେ
ହୃନ୍ଦରଆ ସୁନ୍ଦର ମୋ ନୟନ ସମ୍ପତ୍ତିକ ।୨।

ଶୋଭ ସୃଷ୍ଟ ପୁରନ୍ଦର ରସିକ ଭପ ଶେଖର
ଗୋପୀହୃଦ ଘନସାର ନକୁଞ୍ଜ ହାଣ୍ଡକ ।୩।

ଗଉରଚରଣ ଭଣି ଧନ୍ୟ ଗୋ କଶୋଗ୍ରମଣି
କେଉଁ ବ୍ରତେ ମନାଇଁଛ ସେ ବଂଶୀପଣ୍ଡିକ୍କି ।୪।

———

[ଶନ୍ଦେ ନଅ]

ରୂପାନୁରାଗ

(ମଞ୍ଜୁଳାମଣୀଙ୍କ ଢଙ୍ଗେ ବୃତ୍ତ)

ଅନାଇଁ ଦେଲି କଣ୍ଟରେ କହ୍ନାଇଁ ଆଉକୁ
ଘୃଜ ଘାଟ କେଳି ମାପ ଲତା ଉହାଡ଼କୁ ଲୋ । ଘୋଷା ।

ଏତେ ଛନ୍ଦ ଅଛୁ ବୋଲି ନନ୍ଦ ପୁଅ ଠାରେ
ଜାଣି ତ ନ ଥିଲି ମୁହିଁ ଲୋ ସଜନ ! ପଡ଼ିଲି ହଟାରେ ।୧।

ପରଶ ପାଷାଣ ଜାତ ସେ କାଳିଆ ଗୃନ୍ଦ
ମୋ ପାଇଁ ଥିଲା କ ପାତ ଲୋ ସଜନ ! ତା ମୋହନ ଫାନ୍ଦ ।୨।

କ କୋମଳ ଗୃହ୍ମବାଣୀ କହ୍ବ ସେ ଜାଣଇ
ଚୁମ୍ବକ ଟାଣିଲା ପର ଲୋ ସଜନ ! ଚିତ୍ତକୁ ଟାଣଇ ।୩।

ବେଣ ହୋଇ ନଦୀତଟେ ରହେ ସେ ଯେସନେ
ଚହୁଁ ବାଳ ଚଳିଯିବ ଲୋ ସଜନ ! କେ ଅବା କେସନେ ।୪।

ତା ମୁରଲୀ ବଜା ଖଣ୍ଡି ସଂସାରେ କାହିଁଛୁ ?
କରେ ସେ ଯନ୍ତ୍ରର ସଙ୍କେ ଲୋ ସଜନ ! କି କରି ପାଇଛୁ ।୫।
କୋଟିଏ ସୁଦ୍ଧାର ତାର ଛଇ ଗୁଣକି
ଧନ୍ୟ କେ ଆଣିଛୁ ତାକୁ ଲୋ ସଜନ ! ଗୋକୁଳପୁରକ ।୬।
ଗୌର ଦ୍ୱିଜ ବୋଲେ ରାଧେ ! ମିଛେ ପିନା ମାଇଁ
ତୁମ୍ଭ ପ୍ରେମ ସୁଆଗିଆ ସେ ଢଟିଆ ନାଗର କହ୍ନାଇଁ ।୭।

---

[ ଶତ୍ରେ ଦଶ ]

## ରୂପାନୁରାଗ

(ରାଗ କାମୋଦ ତାଳ ଏକତାଳୀ)

ଆଜ ଦେଖିଲି ବନମାଳୀକ ଗୋ
ଏ ପରା ଦଳଥିଲେ କାଳୀ କ ଗୋ । ଘୋଷା ।
ବ୍ରଜବାଳକ ସଙ୍ଗେ ବନୁ ଆସନ୍ତ ରଙ୍ଗେ
ବଜାଇ ବେଣୁ ଶିଙ୍ଗା କାହାଲୀକ ଗୋ ।୧।
ବନ କୁସୁମେ ବେଶ କି ଶୋଭା ପୀତବାସ
କର୍ଣ୍ଣେ କୁଣ୍ଡଳ କରତାଳିକ ଗୋ ।୨।
ବାମେ ବାନ୍ଧିଛୁ ଜୂଡ଼ା ଶିଖିଶିଖଣ୍ଡ ବେଢ଼ା
ଖୋସିଣ ରଙ୍ଗ ଜାମୁଡ଼ାଳିକ ଗୋ ।୩।
ଅଙ୍ଗେ ଗୋରଜ ଧୂଳି ଆସନ୍ତ ଚଳି ଚଳି
ଡାକନ୍ତ ଧବଳୀ ଶ୍ୟାମଳୀକ ଗୋ ।୪।

କ୍ଷୀର ଲବଣୀ ସର ଭୁଞ୍ଜାଇ କଲ ସ୍ଥିର
* ମୋହନ ସେବେ ପାଦ ତଳକ ଗୋ ।୫।

———

[ଶବ୍ଦ ଏଗାର]

ରୂପାନୁରାଗ

(ରାଗ ପଞ୍ଚମ ବରାଡ଼ି ତାଳ ଝିପୁଟା)

ଅର୍ଯ୍ୟମା ଜେମାର କୂଳେ        କେଳି ଦ୍ରୁମ ପ୍ରିୟ ମୂଳେ
ସଖି ! ମୁଁ ଦେଖିଲି ଯେଉଁ ରୂପ
ସେ ତ ଅତି ଚମତ୍କାର        କୋଟି ସୃଷ୍ଟି ଶୋଭସାର
ଲାବଣ୍ୟ ପ୍ରତିମା ରସକୂପ ଗୋ
ପ୍ରିୟସଖି !
ନନ୍ଦନଟବର ଦିବ୍ୟଠାଣି
ତହିଁ କେତେ ସୁଧା ଅଛି କେ ପାରିବ ଜାଣି ଗୋ ।୧।

ମାଳେନ୍ଦ୍ରମଣି ଦର୍ପଣ        ନଖଯୋଗିଲେ ପଣ ପଣ
ତା କାନ୍ତି ପଣକୁ ନୋହେ ସର

---

* ମୋହନ ଦାସ ୬ ଗୌରଚରଣଙ୍କର ପ୍ରିୟ ଶିଷ୍ୟ ଥିଲେ । ତେଣୁ କୃପାରେ ତାଙ୍କ ନାମରେ ଭଣିତା । ଏହି ମୋହନ ଦାସ ଅଧିକାଶ୍ରୀ ବାବାଜି ବୈଷ୍ଣବ ଚରଣଙ୍କ ପାଖରୁ ଓ ଶ୍ରୀ ବଳଭଦ୍ରଚରଣ ପଟ୍ଟନାୟକଙ୍କ ଅଜାଗୁରୁ ।

———

ନବାମ୍ବୁଦ ମରକତ ଘନକଳା ଜଳଜ ତ
ଲଜ ପାଇ ଯିଟବ ଅପଯଶ ଗୋ
ପ୍ରାଣମିତ !
ଦଳା ଅଞ୍ଜନ କି ହେବ ଲକ୍ଷ
ଖତମାଳ ତମାଳ ତ ହାରିବେ ପ୍ରତ୍ୟକ୍ଷ ଗୋ ।।୨।

ନେତ୍ର ମନ ବିମୋହନ ସୁଲଳିତ ଅଧରଘନ
ସୌନ୍ଦର୍ଯ୍ୟ ସିନ୍ଧୁରେ ଗଲି ମଜ୍ଜି
ନ ପାଇଲି ଥଳ କୂଳ ମୋର ଦମ୍ଭତରୁମୂଳ
ସମ୍ଭତରେ କେଣେ ଗଲା ହଜି ଗୋ
ପ୍ରାଣସଖି !
ଆଜି ପାଉନାହିଁ ଲୋଡ଼ି ଲୋଡ଼ି
ମୋ ନିଜ ମହତ ସେ ତ ଦେଲେ ଜାଳପୋଡ଼ି ଗୋ ।୩।

ତାହୁରୁ ତଳପା ଯାଏ ଉପମା ଦେବି କି ସ୍ୱାପେ
ତାହା ମୋତେ ଆସୁନାହିଁ କହି
ଉପାୟ କହ କି କରି ହେବି ଶ୍ରୀପଦ କିଙ୍କରୀ
ଜାତି କୁଳ ଶୀଳେ ମୁଁ ନ ରହି ଗୋ
ପ୍ରାଣଦୂତି !
ମାଗୁଅଛି ତୋତେ ମୁଁ ଏତିକି
ଭେଟାଇବୁ କି ମୋତେ ସେ ନୀଳହାଣିକ ଗୋ ।୪।

---

[ଶଢେ ବାର]

## ରୂପାନୁରାଗ

(ସଖି ଗୋ ! ମୋର କୁଞ୍ଜକୁ ଆଜ ବୃତ୍ତ)

ସଜନି ! ଶ୍ୟାମ ଶ୍ରୀଅଙ୍ଗଠାଣି
ବସି ଗଢ଼ିଥିଲା କେଉଁ ବଢ଼ାଣି । ଘୋଷା ।
ଯେତେ ଜଳଧାର ସାରକୁ ଆଣି
ଏକ କରି ତନୁ ଅଛି ନିର୍ମାଣି । ୧ ।
ଚୂଳ ଚଳକୁ ଲମ୍ବିଅଛି ବେଣୀ
କବା ଖେଳ କରେ କାଳୀୟ ଫଣୀ । ୨ ।
ଭାଲେ ଗୋରଚନା ରଚନା ପୁଣି
ମଧୁର ହାସକୁ ବାଙ୍କ ଚାହାଣି । ୩ ।
ପୀତବାସ ବଦ୍ୟୁ-ଝଟକ ଜିଣି
ଉରେ ବନମାଳ କଣ୍ଠରେ ମଣି । ୪ ।
କଟୀରେ ଶୋଭନ କ୍ଷୁଦ୍ର କିଙ୍କିଣି
ପଦୁରେ ନୂପୂର କଳା ବାଜେଣୀ । ୫ ।
ଦେଖି କାହା ଦମ୍ଭ ରହିବ ପୁଣି
ସୁରତ ଇଚ୍ଛିବେ ସୁର ତରୁଣୀ । ୬ ।
ଗୌର ଦ୍ୱିଜ ବୋଲେ ଶୁଣ ମୋ ବାଣୀ
ଦଇବ ଦେଲାଣି ତୁମ୍ଭଙ୍କୁ ଆଣି । ୭ ।

———

[ଶବ୍ଦ ଚେର]

## ରୂପାନୁରାଗ

(ରମାବର ! ଅନା ଶ୍ୟାମରୂପ ଦର୍ଶନ କ ସୁନ୍ଦର ବୃତ୍ତ)

ପ୍ରିୟ ଆଳି !

ବୃନ୍ଦାବନ ମାଧୁର୍ଯ୍ୟ ଶ୍ୟାମ ଶୋଭଣିୟ ଗୋ । ଘୋଷା ।

ମହେନ୍ଦ୍ର ନୀଳରତନକାନ୍ତ ଜିଣି ଅପଘନ
ଚନ୍ଦ୍ରିକ ବଟନଟବେଶ ମୋହେ ତନ ପୁଷ୍ପ ଗୋ ।୧।

ଯଶୋଦା ନେତ୍ର ଅଞ୍ଜନ ରସାମୃତ ବଟୀମାଳୀ
ଅଭିନବ ନଟବର ଭଙ୍ଗି ଚମତ୍କାରୀ ଗୋ । ୨ ।

ଅଖିଳ ବ୍ରଜବାସୀ ମାନଙ୍କ ଆନନ୍ଦ ଖଣି
ପ୍ରମତ୍ତ କଳା କୁଞ୍ଜର ନିକୁଞ୍ଜ ବିହାରୀ ଗୋ । ୩ ।

ଦୁଃଖ ପାଶୋରା ଶ୍ରୀରଙ୍ଗ ଲାବଣ୍ୟ ଠାଣି ତ୍ରିଭଙ୍ଗ
କ ସୁନ୍ଦର କେଳି ନୀପ ମୂଳରେ ଉଭାର ଗୋ । ୪ ।

ବସି କେଉଁ ବିଶ୍ୱକର୍ମା ଗଢ଼ିଥିଲା ଏ ପ୍ରତିମା
ନାଗରୀଙ୍କ ଶିରଅବତଂସ ବଂଶୀଧାରୀ ଗୋ । ୫ ।

ଦ୍ୱିଜ ଗୌର କହେ ଭଲ ଶୁଣ ଗୋ ଭାନୁ ଦୁଲାଳ !
ସେ କାମ ମୋହନ ତୁମ୍ଭ ପ୍ରେମର ଭିକାରୀ ଗୋ । ୬ ।

———

[ଶବ୍ଦ ଚଉଦ]

## ରୂପାନୁରାଗ

(ରାଗ ଖଣ୍ଡକାମୋଦୀ ତାଳ ଆଠତାଳୀ)

[ମୂଳେ ମୋତେ ଶରଣ ଗଲ ବୃତ୍ତ]

ଶ୍ୟାମ ହିଭଙ୍ଗି ଛଇଲେ ସଙ୍ଗିନ !!
ବାମନପ୍ରୀତିଙ୍କି କରଇ ବାଇ ଲୋ । ଘୋଷା ।

କଳା ଗ୍ରୀବେ ଦଳାକସ୍ତୁରୀ ଶତା
ବଳାନୁଜଙ୍କୁ ସେ କେଡ଼େ ଶୋଭିତା ।୧।

ଶିଖିପୁଚ୍ଛ ଗୁଚ୍ଛ ସେ ବାଙ୍କ ଚୂଳେ
ଖଞ୍ଜିଛନ୍ତି କେ ରଙ୍ଗେ ମାଳବକୁଳେ ଲୋ ।୨।

କଣ୍ଠେ ଗନ୍ଧଫଳ କଳୀର ପ୍ରଭା
ଦେଖି ନ ଭୁଲିବ କେଉଁ ବଲ୍ଲଭା ଲୋ ।୩।

ହଳପ୍ରିୟମାଳୀ ଜାନୁକୁ ବଳ
ଦୋଳା କେଳି କରେ ଅନାକ ଭଳ ଲୋ ।୪।

କରେ ଧରେ ଯେଉଁ ମୋହନ ବଂଶୀ
କେ ବର୍ଣ୍ଣିବ ଦେଲେ ଅଧରେ ଦଂଶି ଲୋ ।୫।

କୁନ୍ଦକ ବୃନ୍ଦର ଭେଳକ ଲଗା
କନ୍ଦନଜାକୂଳ ସରଣୀଜଗା ଲୋ ।୬।

ଭୂଦେବ ଗଉର ଚରଣ ପ୍ରତି
ସେ ହେଉ ସେ ହେଉ ହେବ ତା ଦାସୀ ଲୋ ।।

—•—

[ଶଙ୍କେ ଚନ୍ଦର]

## ରୂପାନୁରାଗ

ଶ୍ୟାମଶୋଭା ଠାଣି ସେ ବନ୍ଧଭଙ୍ଗି ବୃନ୍ଦାଣି
ଅଳକେ ମୁନ୍ଦରେ କଲ୍ପେ କଲ୍ପେ କଲ୍ପି
ଗଢ଼ି ଥିଲ ଧନ୍ୟ ଧନ୍ୟ ବନ୍ଧ.ଣୀ ॥

କ ସୁନ୍ଦର ଗୃରୁ ଚନ୍ଦ୍ରକ ଚୂଡ଼ା
କୂଳବଧୂ କୂଳ ବରତ ଛଡ଼ା
ବକୁଳ କୁସୁମ ତହିଁରେ ସୁଷମ
କଠୀ ଚଳକୁ ଲମ୍ବିଅଛୁ ବେଣୀ ।୧।

ବେନି ଶ୍ରବଣରେ ରତ୍ନ କୁଣ୍ଡଳ
ଦୋହଲ ଖେଳଇ ଗଣ୍ଡ ମଣ୍ଡଳ
ଗୋରଚନା ଟୋ କପାଳେ ଶୋଭିତା
ନାସେ ଗଜମୋତିବର ବସଣୀ ।୨।

ମୁଖେ ମନ୍ଦହାସ ଯେମନ୍ତ ଶୋଭା
ଦେଖିଲେ କେ ଅବା ନୋହିବ ଲୋଭା
ଉରେ ସୁଚନ୍ଦକ ଦଶେ ଜକ ଜକ
ଦେଖି ଦକ ଦକ ହେବେ ତରୁଣୀ ।୩।

ଶ୍ରୀକରେ ରତନ କଙ୍କଣ ହାର
ଲମ୍ବିଅଛୁ ବଇଜୟନ୍ତୀ ହାର
କଟୀତଟେ ପୀତ ପଟ ବନ୍ଧକତ
କଙ୍କିଣି ମାନସ ନଥଇ କଣି ।୪।

ପାଦରେ ନୂପୁର ନାଦ ଝମକ
ଶୁଣି କୂଳବଧୂ ଚଉ ଚମକ

ରତ୍ନ ପାଦୁକାରୁ ନୟନେଁ ନଦେଖି
ଧ୍ୟାନହୀନ ଜନ ଗଢ଼ରଂ ଭଣି ।୫।

---

[ଶହେ ଷୋଳ]

## ରୂପାନୁରାଗ

(ରାଗ ଖମ୍ବାଜ ତାଳ ଚହପଠ)

ଅନା ଲୋ ସଖି ! କହ୍ନାଇଁ ଠିଆ ଠାଣିକ
ପର କେ ହୋଇବ ତିନ ଭୁବନେ ବଂଶୀପାଣିକ । ଘୋଷା ।
ତା ଯେଉଁ ତ୍ରିଭଙ୍ଗି ଛଇ ବିଲୋକଲେ ଆଖିଆଉ
ଏ ଗୋପପୁରେ କେଉଁ ଗୋପୀ ରଖି ପାରିବ ଆଣିକ ।୧।
ବୃନ୍ଦାବନ କଳାକର ନଟନାଗର ଶେଖର
ଭୃଙ୍ଗି ଦେବ ସଙ୍ଗଙ୍କର ବରତ ଥାଅ ଜାଣି କ ।୨।
ମାର ମୋହନ ମୂରତି ବୃନ୍ଦେଁ କେଁ ପଡିବରଣ୍ଡ
ନ ଇଚ୍ଛିବ ଅବା ପ୍ରୀତି ବଳେ ଘୃତିଣ ବାଣୀକ ।୩।
ରସେ ଗୌର ଦ୍ଵିଜ କହ୍ନ ମିଛ ନୁହେ ଆଲୋ ହଦ୍ଵ !
କେ ଶୁଣିବ ଧୈର୍ଯ୍ୟ ବନ୍ଧ ତା ତମାଳ କାହ୍ନାଣୀକ ।୪।

---

[ଶହେ ସତର]

## ମୋହନ ସୁବେଶ

(ରାଗ ଭାଟିଆର ତାଳ ଖେମଟା)

ବାଳଗୋପାଳ ମଣ୍ଡଳୀ ଗୃହବେଶ ବନାଇଁ
ପଛ ପଟୁଆରେ ବିଜେକଲେ ରାମ ଭଦ୍ରାଇଁ ।୧।

ମଧ୍ୟେ ବେଣୀଭାଇ ଚନ୍ଦ୍ରପାଣେ ଗୋପକୁମର
ଆକାଶରେ ଥାଇ ଚାହାଁ ଦେଖୁଛନ୍ତି ଅମର ।୨।

କେ ବଜାଏ ଶିଙ୍ଗା ବେଣୁ କେହୁ ଧରେ ତାଳକ
କେ ଖେମଟା ରଙ୍ଗେ ନାଚେ ସୁହାଁ ବନମାଳୀଙ୍କ ।୩।

କେହୁ ଚଗ ମାରେ କେହୁ କରେ ଧାଆଁ ଧାଉଡ଼
ବେନ ହରେ ଧରି କେହୁ ବୁଲୁଅଛନ୍ତି ଲଉଡ଼ି ।୪।

ସମସ୍ତଙ୍କୁ ସମସ୍ତେ ଅଟନ୍ତି ବଡ଼ ଭଙ୍ଗିଆ
ସବୁ ନଟକୁଟ କରିବାକୁ ନବରଙ୍ଗିଆ ।୫।

ଉଜପୁ ଜଗମୋହନ ବଟୁ କର ଧରଣ
ଗୋପଦାଣ୍ଡ ମଣ୍ଡୁଛନ୍ତି ଲୀଳାଗତି କରଣ ।୬।

ସାବଧାନେ ସଟଜକର ବୋଲି କେ ଜଣାଉଛି
ଗଉରଚରଣ ଦ୍ୱିଜ ପଦଣ୍ଡ ମଣାଉଛି ।୭।

— — —

[ଶବ୍ଦ ଅଠର]

## ଗିରଟେକା

( ରାଗ ଲଳିତ ମଞ୍ଜରୀ )

କୋମଳ କରଣ ସ୍ୱଣୀ ଶ୍ରୀକୃଷ୍ଣଙ୍କୁ କହେ ବାଣୀ
ଶ୍ୟାମଘନ ରେ ବାପ ଜୀବଧନରେ
ମୋ ନେତ୍ର ସମ୍ପତ୍ତି କଳାକାହ୍ନୁ
ଏ ସଂସାରେ ଭାଗ୍ୟବନ୍ତ ତୋତେ ମୁଁ ପାଇଲି ଢନୁଁ ।୧।

ଦଣ୍ଡେ ହୋଇଲେ ଉଚ୍ଛୁର     ଗୋପେ ହେଉ ଥରଥର
ଶ୍ୟାମଘନ ରେ ବାପ ଗୋବଧନ ରେ
କାଲଠାରୁ ନାହିଁ ତ ଭୋଜନ
କେତେ ଶୁଖିଲ୍ଲ ଦିଶୁଛୁ ତୋ ଚନ୍ଦ୍ରବଦନ ।୨।

ନଣିଘଡ଼ ଦୁଇ ନୋଡ଼ୁ     ନଦେ ତଳ ପଡ଼ିଯାଉ
ଗୋବଧନ ରେ ବାପ ଶ୍ୟାମଘନ ରେ
କାଲି ଉଜାଗର ଧନ ରାଏ
ଘୂମିତ ଦିଶୁଛୁ ନବଘାଳ ଇନ୍ଦୀବର ନେତ୍ର ।୩।

ବଂଶୀ ଅବା କେତେ ଗରୁ     ଦଣ୍ଡେ ଯେବେ ତାକୁ ଧରୁ
ଗୋବଧନ ରେ ବାପ ଶ୍ୟାମଘନ ରେ
କରୁଥାଉ ଏ ହାତ ସେ ହାତ
ବ୍ୟଥା ପାଇବଣି ଭୁଜ ଧରିବାରୁ ଏ ପର୍ବତ ।୪।

ପୋଏ ଧରିଥାନ୍ତୁ ଗିରି     ତୁ ବାନ୍ଧୁ ଭୋଜନ ସାରି
ଗୋବଧନ ରେ ବାପ ଶ୍ୟାମଘନ ରେ
ପୁଣି ସଙ୍ଗେ ଧରିବୁ ମନ୍ଦର
ଆସ ମୋ ପ୍ରାଣ ଟି ବାପ ନବୀନ ଘନ ସୁନ୍ଦର ।୫।

ଯଶୋଦା ବଚନ ଶୁଣି     ସକଳ ବାଳକେ ଭଣି
ଶୁଣ ରାଣି ଗୋ ! ମାତ ଠାକୁରାଣି ଝଗା
ବାମଭୁଜେ ଗିନା ଗୋବର୍ଦ୍ଧନ
ବଢ଼ାଇ ଦିଅ ଦକ୍ଷିଣ କରେ କରନ୍ତୁ ଭୋଜନ ।୬।

• ପୁଅଙ୍କ କଣ୍ଠାଳ ଜାଣି     ସୁବର୍ଣ୍ଣ ଥାଳରେ ରାଣୀ
ଦ୍ରବ୍ୟ ଅନ୍ନ ସେ ଘୃତେ ପରିପୂର୍ଣ୍ଣ ହେ
ଷଡ଼ରସ ବହୁଧ ବ୍ୟଞ୍ଜନ
ଉଭାହୋଇ ସଙ୍ଗେ କୃଷ୍ଣ କରନ୍ତି ଭୋଜନ ।୭।

ଆଣି ଧର ନନ୍ଦନାରୀ ତନୁପାଶେ ଫେର ଫେର
ପରଶନ୍ତି ସେ ମାଏ ଯଶୋବନ୍ତୀ ହେ
ସଙ୍ଗ ଯୋଏ ଭୋଜନ କରନ୍ତି
ଆନନ୍ଦରେ ଗୋପ ଗୋପୀମାନେ ଅନାଇ ଅଛନ୍ତି ।୮।
କେ ବୋଲଇ ଧନ୍ୟ ଧନ୍ୟ ଅମର ପୁର ସ୍ୱଜନ
ଭଲ ଭଲ ସେ ଇନ୍ଦ୍ର କ ନ କଲ୍ ଗୋ
ଏ ଶିଶୁ ସମ୍ପତ୍ତି ଦେଖାଇଲ୍
କେ ବୋଲଇ ଆମ୍ଭ ନେତ୍ର କେତେ ତପ କରିଥିଲ ।୯।
ସୁବାସିତ ଖିର ଆଣି ମୁଖ ଧୋଇଦେଲ ରାଣୀ
ବସ୍ତ୍ରେ ପୋଛୁ ସେ ମୁଖ ନନ୍ଦବଧୂ ହେ
ଗଉର ଚରଣ ଏହା ଇଚ୍ଛି •
କନକ ଥାଳୀରେ ଅବଶେଷ ଅନ୍ନ ଯେତେ ଅଛି ।୧୦।

---

[ଶ୍ରୀଦେ ଉଶେଇଶ]

## କୃଷ୍ଣ କରଣି

(ରାଗ ମୋହନା ତାଳ ଝୁଲା)

ଶୁଣ ନନ୍ଦରାଣି ଗୋ ! ତୁମ୍ଭ ପୁଅ କାହାଣୀ
ନଟବର ବେଶ ହୋଇ ନୀପମୂଳେ
ମୋହନ ମୁରଲୀ ବଜାନ୍ତି ପୁଣି । ଘୋଷା ।
ନାନା ଜାତି ବନ କୁସୁମ ସୁଷମ
ଅତି ମନୋହର ଚିକୁର ବେଣୀ
ଚୂଳ ଉପରକୁ କି ଶୋଭା ଦିଶଇ
ମୟୂର ପୁଚ୍ଛ ଚନ୍ଦ୍ରିକ ଖଞ୍ଜଣୀ ।୧।

ମକର କୁଣ୍ଡଳ କର୍ଣ୍ଣେ ବସ୍ତଜାତ
ଝଲେ ଗୋରୋଚନା ନାସାରେ ମଣି
କମ୍ବୁକଣ୍ଠେ ଜମ୍ବୁନଦର ପଦକ
କଟୀରେ ଖଞ୍ଜିଛୁ କ୍ଷୁଦ୍ର କଙ୍କିଣୀ ।୨।

ସ୍କନ୍ଧେ ରତନ କଙ୍କଣ ଜଡ଼ିତ
ପଦ୍ମରେ ନୁପୁର କଳା ବାଜେଣି
ଆଭରଣ ପୀତ ବସନ ଝଟକ
ନବଘନେ ଯେହ୍ନେ ସଉଦାମିନୀ ।୩।

ଦୃଶ୍ୟ ମନ୍ଦ ମନ୍ଦ ପ୍ରକାଶି ଗୋବନ୍ଦ
ମୁରଲୀ ଉପରେ କବେଣି ପାଣି
ଭ୍ରୂଭଙ୍ଗିକି ତା ଦୂରୁ ଅନାଇଲେ
ମାନ ମାନସରୁ ପକାଏ ହାଣି ।୪।

ସେ ମୁରଲୀ ସ୍ୱନ ଶୁଣିଣ ତପନ—
ନନ୍ଦନୀ ଉଚ୍ଛୁଳ ବହେ ଉଜାଣି
ମୀନ ଭେକ ଜଳ କୂଳରେ ପଡ଼ନ୍ତି
ଶିଳାମାନେ ଦ୍ରବ ହୁଅନ୍ତି ପାଣି ।୫।

ବସ୍ତ୍ର ସ୍ତନପାନ ତେଜଣ ମଜନ
ହୋଇ ଶୁଣନ୍ତି ତା ମୁରଲୀ ବାଣୀ
ଶାର୍ଦ୍ଦୂଳ କୁରଙ୍ଗ ହୁଅନ୍ତି ଏକସଙ୍ଗ
ନକୁଳର ସଙ୍ଗେ ଖେଳଇ ଫଣୀ ।୬।

ଶୁଣ ଏ ଗୋ ମାଏ ଜାଣିଲୁ ନିଷ୍ଟଏ
ସେ ଭୂମ୍ଣ ତନପ ହୁଅନ୍ତି ପୁଣି
ତ୍ରିଭୁବନ ସାର ମୋହନ ମୂରତି
ଏ ଗୋପେ ଧରିବ ଛୁଡ଼ନ୍ତି ଆଣି ।୭।

ଶୁଣି କୃଷ୍ଣକାନ୍ତ ବାଣୀ ଯଶୋବନ୍ତୀ
ସନ୍ତୋଷେ ଗୋପୀଙ୍କି ଦେଲେ ମେଲାଣି
ହରଷରେ ନଶି ଉତ୍ସବରେ ବସି
ସେ ଦ୍ୱିଜ ଗଜର ଚରଣଂ ଭଣି ।୮।

---

[ ଶତେଦ୍ୱ ଷୋଡ଼ଏ ]

ଗୋପବାଳକ ଅଳି

(ଝୁଲ ଚଉପଦ)

ଶ୍ୟାମ ଘୁଙ୍ଗୁ ନ ଦେବୁ ବାଟ
ଦେଇ ଯାଅ ନୂଆ ଗୋପାଳ ଘାଟ । ପଦ ।
ଛଦା ଛନ୍ଦ କରି ଭ୍ରୁ କର
ମଧ୍ୟେ ବ୍ରଜରାଜ କିଶୋର
ଛନ ଚଳ ବାଳଗୋପାଳ ମଣ୍ଡଳ
ଆନନ୍ଦେ କରନ୍ତି ଗଉଡ଼ ନାଟ ।୧।
ତୁମ୍ଭେ ଝାଞ୍ଜିଦାମ ମୋହନ
ଆମ୍ଭ ଆଶା କରିବ ପୂର୍ଣ୍ଣ
ଦିଅ ରତ୍ନହାର ପଦକ କୁଣ୍ଡଳ
କାହିଁକି ମୋହନ ଦେଖିଛ ଜାଠ ।୨।
ହସି କୃଷ୍ଣ ବୋଲନ୍ତି ଶୁଣ
ଲେଉଟାଇ ଦେବା ମାଗଣ
ଶୁଣି ଗୋପସୁତ ବୋଲନ୍ତି ହେ ମିତ !
ଅମ୍ଭେମାନେ ଛଡ଼ ନାହିଁ ସେ ପାଠ ।୩।

କୃପାନିଧି ! କରୁଣା କର
ଦେଇଯାଅ ଅଭୟ ବର
କହେ ଗୌର ନଟନାଗର ପାଳଟ
ଲାଟ ଦେଲେ ଶିରେ ବାନ୍ଧିବୁ ପାଟ ।୪।

---

[ଶହେ ଏକୋଇଶ]

ରାଧା ଭୂତାବେଶ

(ରାଗ ଖମ୍ବାଜ ତାଳ ପହପଟ)

ସେ କାଳଆଭୂତ ଲାଗିଛି ରାଧାକୁ ସହି
କେ ଜାଣେ କେଉଁ ଗୁଣିଆ କବା ମନ୍ତ୍ରର ପାଙ୍ଗିଛି ॥
କୁମ୍ଭାର ଶବଦ ଶୁଣି ହୁଙ୍କାର ଗର୍ଜନେ ପୁଣି
ଫୁକାରରେ ହୁଏ ଗୁଣି ଲୁକାଇ ତା ରାବ କରୁଛି ।୧।
ଉଡ଼ିଗଲେ କୋଇଲଟି ବୋଲେ ମୁଁ ତୋ ପୋଇଲୀଟି
କଳା ଅରବିନ୍ଦ ଦଳ ବକ୍ଷେ କଷାଁ ଦିଏ ବାଞ୍ଛି ।୨।
ନୀଳ ମେଘେ ଦେଇ ଦୃଷ୍ଟି କ ରାଚ ରାଚ କୁମ୍ଭୋଷ୍ଟୀ
ହସି ହସି ଦରକଣ୍ଠୀ କଇଁ କଇଁ ତ କାନ୍ଦୁଛି ।୩।
କେଶ ବାସ ଅସମ୍ଭାଳେ ଏକାଇ ତମାଳ ମାଳେ
ବୁଲି ବୁଲି ଧରି ବଳେ ଶ୍ୟାମକର ନ ଛାଡ଼ୁଛି ।୪।
ଗଉର ଚରଣ ଭାଷେ ଏହା ମୋ ମନକୁ ଆସେ
ନିଶ୍ଚେ ଧନୀ ମନଧନ ମୋହନକୁ ସମର୍ପିଛି ।୫।

---

[ଶହେ ବାଇଶି]

## ଦଧିଗୀତ

ଦଧି କେ ନେବ ଗୋ ଷଳମ୍ବ ନ କର ଆମ
ସବୁଠୁଁ ସରସ ଏ ଗୋଟ ଗୋରସ
ଯାର ମଧୁ ମଧୁ ବାସ ।ଘୋଷା।
ଏ ଦଧିର ସିଧି ନ ଜାଣନ୍ତି ବିଧି
ଆନ ବା ଜାଣିବ କହିଁ
ଗୋପପୁର ବିନୁ ତିନ ଭୁବନରେ
ଖୋଜିଲେ ମିଳିବ ନାହିଁ ।୧।
ନିତ ସେ ନୂତନ ନୁହେ ପୁରାତନ
ସର୍ବଦା ସମ୍ପୂର୍ଣ୍ଣ ମିଠା
ଏମନ୍ତେ ଅନେକ ଯୁଗ ବିତିଗଲେ
ହେବେହେଁ ନୋହିବ ଖଟା ।।୨।
ଦଧି ଦୁଗ୍ଧ ଘୃତ ଲବଣୀ ସହିତ
ଆବର ଅଛଇ ଛେନା
ଏହୁ ପଞ୍ଚଦ୍ରବ୍ୟ ସ୍ୱାଦୁ ସଜରଭ
ଚାଖିଲେ ଜାଣିବ ସିନା । ୩ ।
ଏ ଦଧିକ ଆଶ କରଣ ମହେଶ
ତେଜି କୈଳାସ ଭୁବନ
ଗୋପେଶ୍ୱର ନାମ ବହି ଗୋପଗ୍ରାମ
ନିତି ଦଧି ମରଦନ ।୪।
ହନେ କୃଶପାଣି ମହିମା ନ ଜାଣି
ବତ୍ସବାଳ ହରିନେଲେ

ଜ୍ଞାନ ପାଇ ପୁଣି ସମର୍ପିଲେ ଆଣି
ଦଧି ଅନ୍ନ ସେବାକଲେ ।୫।
ପୁଣିହିଁ ନାରଦ କର ଘାଣା ବାଦ୍ୟ
ଗୋପରେ ମିଳଲେ ଆସି
ଗୃହିଣ ସେ ଘୋଳ ସେ ଦନ୍ତୁଁ ଗୋପାଳ
ମନ୍ତ୍ରରେ ହୋଇଲେ ଋଷି ।୩।
ଏ ସର ଲବଣୀ ଗୃହି ବେଣୁପାଣି
ଓଳିଆ ହୋଇଲେ ପର
କଲେ ହୁର ଜୁର ଏ ଗୋପ ନଗର
ଆବର ପଡ଼ଲେ ଧର ।୭।
କେହୁ କେତେ ଗାଳ ଦେଲେ ଗୋପବାଳୀ
ପଡ଼ଲ ବିଷମ ଧନ୍ଦା
ସେ ନନ୍ଦନନ୍ଦନ ଯାମଳା ଅର୍ଜୁନ
ତଳେ ହୋଇଥିଲେ ବନ୍ଧା ।୮।
ଏ ଦଧିର ଗୁଣ କହୁଅଛୁ ଶୁଣ
ଏତିକ ଲକ୍ଷଣ ଅଛୁ
ଶକ୍ୟ ବଳେ ପାନ କରିଥିଲେ ଆନ
ରସ ନ ରୁଚଇ କଛୁ ।୯।
ନ ଲଗିବ କ୍ଷୁଧା ନ ଲଗିବ ବାଧା
ତାପ ତୃଷ୍ଣା ହେବ ଶାନ୍ତ
ଦନ୍ତୁ ଦନ ତନୁ ନୂତନ ଦଶିବ
ଫୁଟି ବରଜବ କାନ୍ତ ।୧୦।
କହିଲୁଟି ସତ ଶୁଣ ପ୍ରାଣମିତ
ଅପ୍ରତେ ନ କର ଏଣେ

ଏ ଦହି ଖାଇଲେ ଏ ଦେହକୁ ଛାଡ଼ି
ଆମ୍ଭ ସଙ୍ଗେ ହେବ ଜଣେ ।୧୧।

ଆଣ ଥିଲେ ଆସ ନ ଥିଲେ ନ ଆସ
ମଧୁରକ୍ତ ଫେରଯାଅ
ଯାର ନାହିଁ ଧନ ଥିବ ଅବା ମନ
କାଳ ହେଲେ ନେଇଆଅ ।୧୨।

ଆନ ଧନ ମାନ · ହେବ କ ସମାନ
ଏ ପଦାର୍ଥ କଣିବାକୁ
କଉତୁକ କର ଆସିଅଛୁ ଫେର
ତୁମ୍ଭ ମନ ଜ ଣିବାକୁ ।୧୩।

ନାନା ପ୍ରେମଭକ୍ତି ସେ ଗୋପ ଯୁବତୀ
ମଥୁରାନାଥଙ୍କି କହି
ଦ୍ୱାରେ ଦ୍ୱାରେ ଫେର ସକଳ ଆଭୀରୀ
ଆନନ୍ଦେ ବିକଲେ ଦହି ।୧୪।

ସାଣ କାରବାର ଯେପର ଯାହାର
ଗୋପକୁ ଚଳିଲେ ସ୍ୱଚ୍ଛେ
ଗଉରି ଚରଣ ଆଶାକର ପୁଣ
ଧାଇଁଛନ୍ତି ଗୋପୀଙ୍କ ପଛେ ।୧୫।

———

[ଶବ୍ଦ ଚେଇଣ]

## କୋଳଗୀତ

କୋଳ କେ ନେବରେ ବହନ ହୋଇଣ ଆସ
ବୃନ୍ଦାବନ କୋଳ ଅମୃତରୁ ସ୍ୱାଦ
କର୍ପୂରକୁ ଜିଣି ବାସ । ଘୋଷା ।
ଧାର ମନଧନ ଅଛୁ ସେ ବହନ
ଏ ଫଳ ମୂଲ୍ୟଇ ନିଅ
ଆଗ ପାନ କର କେମନ୍ତେ ମଧୁର
ପଛନ୍ତେ କଜଡ଼ ଦିଅ ।୧।
ଦ୍ରାକ୍ଷା ବୋଲି କରି ଏକ ଫଳ ଅଛୁ
ତା ଠାରୁ ମଧୁର ନାହିଁ
ଦମ୍ନମନ୍ତ ତେଜ ଦାସୀଭାବ ହେଲେ
ସେ ଫଳର ସ୍ୱାଦୁ ପାଇଁ ।୨।
ଆବର ନାରଙ୍ଗ ଆଣିଛୁ ସୁରଙ୍ଗ
ସେ ବଡ଼ ଶୀତଳ ରସ
ନାମ ହେଜ ମନ୍ଦି ପାନ କରୁଥିଲେ
କ୍ଷୁଧା ତୃଷା ଯିବ ନାଶ ।୩।
ଆଣିଅଛୁ ଜାମ୍ବୁ ଜମ୍ବିଲ ଭଙ୍ଗଞ୍ଜ
ମହୁଲ ଲେଖନ କୋଳି
ଖିରିକୋଳି ଗୁର- କୋଳି ବରକୋଳି
ବନରୁ ଆଣିଛୁ ତୋଳି ।୪।
କରମଙ୍ଗା ବୋଲି ଏକ ଫଳ ଅଛୁ
ସେ ଫଳର ତିନ ଅଂଶ।

ତାକୁ ଖାଇଥିଲେ ନିତାପ ତୁଟଇ
ଆବର ନ ଥାଇ ହିଂସା ।୫।
ଅନ୍ତୁ ନରକୋଳ ସୁପକ୍ୱ ଖଜୁର
ବେତକୋଳି ବଡ଼ ମିଠା
ଲେଖନ କୋଳର ଏତକ ଲକ୍ଷଣ
ଅଳପ ଲାଗଇ ଖଟା ।୬।
କଦଳୀ ସୁନ୍ଦରୀ କପିଥ୍ଥ କାନ୍ଥିଆ
କମଳା ଏ ପଞ୍ଚ ଫଳ
ସବୁ ରୂପ ରସ ସ୍ପର୍ଶ ଗନ୍ଧ ମିଶି
ପଞ୍ଚରସ ଯାକ ମୂଳ ।୭।
କୁଟିଳ କପଟ ବିଷୟ ଲମ୍ପଟ
ଛାଡ଼ ଏ ଫଳକୁ ଭକ୍ଷ
ଶ୍ରୀକୃଷ୍ଣ କୃପାରୁ ଅବଶ୍ୟ ଲଭିବ
ଧର୍ମ ଅର୍ଥ କାମ ମୋକ୍ଷ ।୮।
ଯେବେ ବ୍ୟାଧିମନ୍ତ କରିବ ବାଞ୍ଛିତ
ଆରୋଗ୍ୟ ହୋଇବ ତନୁ
ଦରିଦ୍ରକୁ ଧନ ମୂର୍ଖକୁ ପଣ୍ଡିତ
କରିବେ କାଳିଆ କାହ୍ନୁ ।୯।
ନାରୀମାନେ ଯେବେ ଏ ଫଳ ଭୁଞ୍ଜିବେ
କୃଷ୍ଣେ ହେବେ ଅନୁରାଗୀ
ଧନବନ୍ତ ପୁତ୍ର— ବନ୍ତ ସୁଲକ୍ଷଣୀ
ସଦା ସ୍ୱାମୀସଙ୍ଗଭାଗୀ ।୧୦ ।
ଆଗୋ ଗୋପ ଗୋପି ! ତୁମ୍ଭେ ବଡ଼ ତପୀ
ଏ ଫଳକୁ ଭୁଞ୍ଜିଥାଅ

ମନୋରଥ ପୂର୍ଣ୍ଣ ହୋଇବ ବହନ
କଦମ୍ବ ମୂଳକୁ ଯାଅ ।୧୧।
ଗଉର ଚରଣ ଏ ଅନୁସରଣ
କରନ୍ତୁ ବ୍ରଜକୁ ଯିବ
ଦ୍ୱାରେ ଦ୍ୱାରେ ଫେର ମାଗି ମାଧୁକରୀ
କୁଣ୍ଡଖରେ ପଡ଼ିଥିବ ।୧୨।

———

[ଶଦ୍ଦେ ଚବଣ]

## କଂସ ଆଜ୍ଞା

ଗୋ ଶୁଣ ଏକଥା ଅତି ବଡ଼ମଣ
ଲଗିଛୁ ଅଘଟ ଘଟଣ ଗୋ ଶୁଣ । ପଦ ।
ରାଜା ପେଶିଛୁ ଗୁର ପଦ୍ମ ସହସ୍ର ଘର
ଦେବେ ଏ ଗୋପଲୋକେ ପୁଣ ଗୋ ।୧।
ତାହା ପ୍ରାଣକୁ କାର ଆଶାନାହିଁ ବଗୁର
ଜାଣି ଲୋଡ଼ିବ ମରଣ ଗୋ ।୨।
ଏତେ ନିର୍ଦ୍ଦୟ କଂସ ମାରିବ ଆମ୍ଭ ବଂଶ
ତେଣୁ କରନ୍ତି ଏ ଭିଆଣ ଗୋ ।୩।
ସବୁଦିନେ ତାହାର ଗୋପକୁ ଅହଂକାର
କାହିଁକି ଏତେ ଦାରୁଣ ଗୋ ।୪।
କେ ବୋଲେ କି କରିବା କାହାକୁ ପଗ୍ଭରିବା
କେ ଅବା ରଖିବ ଶରଣ ଗୋ ।୫

କେ ବୋଲେ କପାଁ ଡର    କୃଷ୍ଣ ଛନ୍ତି ଆମ୍ଭର
ଅବଶ୍ୟ କରିବେ ରକ୍ଷଣ ଗୋ ।୬।
କେତେ କେତେ ଦଇତ    ନ କଲେ କି ଉତ୍ପାତ
ସମସ୍ତେ ଲଭିଲେ ମରଣ ଗୋ ।୭।
ଅଘା ଶକଟା ବକା    ତୃଣାବର୍ତ୍ତ ଧେନୁକା
କ୍ଷୀର ସଙ୍ଗେ ପୂତନା ପ୍ରାଣ ଗୋ ।୮।
ଏ ମାନ ଶୁଣି କଂସ    କୃଷ୍ଣଙ୍କୁ କରି ରୋଷ
କରନ୍ତୁ ଏ କୂଟ ଭିଆଣ ଗୋ ।୯।
ଗଉଡ଼ ଦ୍ୱିଜ କହେ    ନ କର କିଛି ଭୟେ
ଯା ନାମ ମାନଉଦ୍ଧାରଣ ଗୋ ।୧୦।

---

[ଶତେ ପଚଶି]

## ଗୋପବାଳକ ବିଳାପ

(ତାଳ- ଝ ପଟା)

ଆହେ ହରି ହେ ହରି ହେ
ସାଣ୍ଡେଦେଲ ଗୋପପୁରଶିଶୁ ହେ । ଘୋଷା ।
ଆମ୍ଭମାନଙ୍କ ଜୀବନ ନ ଯାଏ କାହିଁକ
ଛନ୍ଦିଛୁ ପିଣ୍ଡେ କି ସୁଖ ପାଇବା ପାଇଁକ ।୧।
ଅକାଳ ଚଢ଼କ ପଡ଼ୁ ନାହିଁ ଆମ୍ଭ ମୁଣ୍ଡେ
କେମନ୍ତେ ସ୍ଥଳିବୁ ଆମ୍ଭେ ଗୋପପୁର ଦାଣ୍ଡେ ।୨।
ନନ୍ଦରାଣୀ ଶୁଣିଲେ କି ଜୀବନ ଧରିବେ
ଶୁଣ ଘୋଷି ବ୍ରଜବାସୀ ନିଶ୍ଚୟ ମରିବେ ।୩।

ଝୁରୁଥିଲୁଁ ମନରେ ସମସ୍ତ ବାଳଙ୍କ
ତୁମ୍ଭ ସଙ୍ଗେ ସଙ୍ଗ ହୋଇ ବଞ୍ଚିବୁ କାଳକ ।୪।
ଏତେ ବଡ଼ ମନୋରଥ ବ୍ୟର୍ଥରେ ଗଲା
ସ୍ୱପନ ସମ୍ପତ୍ତି ପ୍ରାୟ ବିଧି ଭାଙ୍ଗିଦେଲା ।୫।
କାହାକୁ କହିବୁ ଶ୍ଳେଷ କରଣ ଇଙ୍ଗିତ
ଅହୋରାତ୍ର କାହା ଆଗେ କରିବୁ ସଙ୍ଗୀତ ।୬।
ଏହିରୂପେ ଅନେକ ରୋଦନ କଲେ ସ୍ୱରେ
କେହୁ ଗଡ଼େ କେହୁ ପଡ଼େ କେ ରହେ ମୂର୍ଚ୍ଛିତେ ।୭।
ଗୌରଦ୍ୱିଜ କାନ୍ଦିବୋଲେ ଏହି ଆଜ୍ଞା ହେଉ
ତୁମ୍ଭ ନାମ ଧରି ମୁଖେ ଏ ଜୀବନ ଯାଉ ।୮।

———

[ଶତେ ଛବଣ]

## ଗୋପିକା ବିଳାପ

(ରାଗ ଶୋକମଞ୍ଜରୀ)

ଶ୍ୟାମଘନ ହେ ! ମୋହନ ବଂଶୀ ବଦନ
ବ୍ରଜମଣ୍ଡଳ ମଣ୍ଡନ ଯଶୋଦା ଜୀବନଧନ । ଘୋଷା ।
ଆମ୍ଭମାନଙ୍କର ଚିତ୍ତେ ଆଶା ଥିଲା ଯେତେ ଯେତେ
ସେ ସବୁ ବ୍ୟର୍ଥ ଗଲା କାମନା ନୋହିଲା ପୂର୍ଣ୍ଣ । ।
ଆମ୍ଭେ ଅତି କୁଲକ୍ଷଣୀ ହୀନଜାତି ଗୁଆଳୁଣୀ
ଶ୍ରୀମୁଖ ମଧୁପାନକୁ ହୁଅନ୍ତୁ କେହି ଭାଜନ ।୨।
ଏହିଠାରୁ ଗୋପିକାଏ ସରିଲା ହେ ବଂଶୀଧାରୀ !
ଝୁରି ଝୁରି ଗୋପନାରୀ କେମନ୍ତେ ବଞ୍ଚିବୁ ଦିନ ।୩।

କାହାକୁ ଭଙ୍ଗୀ ବଚନ କରିବୁ ଆମ୍ଭେ ରଚନ
କେହୁ ଭୃକୁଭଙ୍ଗୀ କରି ବନ୍ଧେ ଠାରିବ ନୟନ ।୪।
କେ ସର ଲବଣୀ ଚୋରି କରିବଟି ଆମ୍ଭ ପୁରୀ
କା ନାମ ଧରି ଗୁହାରି କରିବୁଁ ନନ୍ଦ ଭୁବନ ।୫।
ଆଜ କାହା ପାଇଁ ମାଳ ଗୁନ୍ଥିବୁଁ ହେ ନନ୍ଦବାଳ
କାହା ଶ୍ରୀଅଙ୍ଗେ ବୋଳିବୁଁ ଚୁଆ କର୍ପୂର ଚନ୍ଦନ ।୬।
କାହାକୁ ଆମ୍ଭେ ଗେଲାଇ କହିବୁ ନାସା ଫୁଲାଇ
ଆଉ କି ଶୁଣିବୁଁ କର୍ଣ୍ଣେ ମୁରଲୀ ଗୀତ ଗାୟନ ।୭।
ଏ ଆମ୍ଭ ହୃଦୟ ଜାଣି କୁଳିଶରୁ ହେଲା ଟାଣ
ଫାଟି ନ ଯାଇ ରହିଛୁ କି ନିର୍ଲଜ୍ଜ ପାପ ଜୀବନ ।୮।
ଯଶୋଦା ଉଦର କ୍ଷୀର ସିନ୍ଧୁ ମଧ୍ୟୁଁ ସୁଧାକର
ଉଦେ ହୋଇ ଏବେ କାଳୀହ୍ରଦରେ ହେଲ ପତନ ।୯।
ଆମ୍ଭ ନେତ୍ର କର୍ଣ୍ଣ ଯାହା ଦେଖିଲୁ ଶୁଣିଲୁ ଏହା
କି କଷ୍ଟ ବହିଲୁ ଆଣି ପାପିଷ୍ଠ ଅଷ୍ଟନୟନ ।୧୦।
ଗଉରଚରଣ ଭଣି ସକଳ ଗୋପ ତରୁଣୀ
କାଳନ୍ଦୀ ହ୍ରଦକୁ ଚାହିଁ କରନ୍ତି ଦୁଃଖେ ରୋଦନ ।୧୧।

---

[ଶହେ ସତାଇଶି]

## କାଳୀୟ ଶିର ନର୍ତ୍ତନ

କାଳୀୟ ଶିରେ ନୃତ୍ୟ କରନ୍ତି ପଦ୍ମନେତ୍ର
ନନ୍ଦସୁତ ପାଦ ଛନ୍ଦ ବନ୍ଦନ୍ତି ଗଉରୀନାଥ ।ପଦ।
ଜୟ ଜୟ ମହାଦେବ ଦେବଙ୍କ ଉପରେ ଦେବ
ଏହି ଆଜ୍ଞା ଶୀଘ୍ର ହେଉ ଏ ଜଳ ହେଉ ଅମୃତ ।୧।

ସମୁଦ୍ର ମନ୍ଥନୁ ଉଣ ଜାତ କାଳକୂଟ ବିଷ
ତାହା ଭକ୍ଷି ନୀଳକଣ୍ଠ ରଖିଛ ସବୁ ଜଗତ ।୨।

ଶ୍ରୀକୃଷ୍ଣ ବନ୍ଦନା ଶୁଣି ତୋଷହେଲେ ଶୂଳପାଣି
ରଚିଲେ ତାଣ୍ଡବ ନୃତ୍ୟ ବଜାଇ ଡମରୁ ଯନ୍ତ୍ର ।୩।

ଇନ୍ଦ୍ର ଚନ୍ଦ୍ର ଦେବବୃନ୍ଦ ସମସ୍ତେ ହେଲେ ଆନନ୍ଦ
ସୁଧା ଦେଇ ପଠାଇଲେ ଘେନାଇ ବନତାସୁତ ।୪।

ମିଳିଲେ ଶ୍ରୀକୃଷ୍ଣ ପାଶେ କାଳୀକି ଅନାଇ ବେଷେ
ପାଦପଦ୍ମ ତଦ୍ଧ୍ୟା ବନ୍ଦି କଲ କୋଟି ଦଣ୍ଡବତ ।୫।

ଶୁଝିଥାନ୍ତି ପୂର୍ବ ଋଣ ତୋ ଶିରେ ତ ଶ୍ରୀଚରଣ
ଦେଖି ମୁଁ ହେଲି କାରଣ ଆଜ୍ଞୁଁ ତୋର ମୋର ମିତ ॥

ଏତେ କହି ଖଗଇନ୍ଦ୍ର ହେଲା ପରମ ଆନନ୍ଦ
ଶ୍ରୀକୃଷ୍ଣ ମସ୍ତକ ପରେ ସିଞ୍ଚିଲା ନେଇ ଅମୃତ ।୭।

କାଳନ୍ଦୀ ହ୍ରଦରେ ପଡ଼ି ବିଷ ଦୋଷ ଗଲା ଛାଡ଼ି
ପୂର୍ବରୁ ଯେ ମରିଥିଲେ ସର୍ବେ ହୋଇଲେ ଜୀବିତ ।୮।

ନାଗପତ୍ନୀମାନେ ମିଳି ଗରୁଡ଼ ଗଗନେ ଚଳି
ସ୍ତୁତି କଲେ ସର୍ବ ବାଳୀ ଶିରେ ଯୋଡ଼ି ବେନି ହସ୍ତ ।୯।

ଯେ ପାଦ ଅଘଖଣ୍ଡନ କାଳୀମସ୍ତକ ମଣ୍ଡନ
ଗଉର ଚରଣ ବୋଲେ ସେ ପଦତଳେ ମୁଁ ଭୃତ୍ୟ ॥

— — —

[ଶହେ ଅଠାଇଶ]

## ନାଗିଣୀ ସ୍ତବ

(୪୮ ନୂ ଚୌପଦୀ)

ହେ ମୋହନ ! କର ଅବଧାନଂ
ଶ୍ରୀଚରଣ ତଳେ ଶରଣ ପଶୁଛୁଁ ଦଅ ବାରେ ପଦ୍ମଦାନ । ପଦ ।

କରେ ଘେନ ଅର୍ଘ୍ୟସ୍ଥାଳୀ ସବ୍ବ ନାଗବାଳୀ
ନନ୍ଦନନ୍ଦନଙ୍କୁ ବନ୍ଦାପନା କରି ଉଚ୍ଚେ ଦେଲେ ହୁଳହୁଳି ହେ ।୧।

ଦୋଷ ଅନୁକ୍ରମେ ଶାସ୍ତି ପାଇଲୁଣି ସେହୁ
ଦଣ୍ଡିବା ମଣ୍ଡିବା ପ୍ରଭୁଙ୍କ ଉଚିତ କ୍ଷମାନିଧି ଆଜ୍ଞା ହେଉ ହେ ।୨।

ସହଜେ ସର୍ପ ଜନମ ଅଟଇଁ ଅଜ୍ଞାନଂ
ସେ କାହୁଁ ଜାଣିବ ଉତ୍ତମ ମଧ୍ୟମ ଗରଳରେ ପରିପୂର୍ଣ୍ଣ ହେ ।୩।

ସକଳ ଜନ ହୃଦରେ ତୁହି ସିନା ଥାଉ
ଯାହାର ଯେମନ୍ତ ଭାବକୁ ତେମନ୍ତ ଭାବେ ତାକୁ ପ୍ରବର୍ତ୍ତାଉ ହେ ।୪।

ଶତ୍ରୁ ମିତ୍ର ପରାପର ନାହିଁ ଯାହା ଠାରେ
ଶୁଣିଥିଲୁଁ ସିନା ଜାଣି ତ ନଥିଲୁ ଦେଖାଗଲା ଏହିଠାରେ ହେ ।୫।

ଲକ୍ଷ୍ମୀରଂ ନିବାସ ଭକ୍ତ ଭାବୁଥାନ୍ତି ଯାହା
ଏ ବଡ଼ ଦୁର୍ଲ୍ଲଭ ଆମ୍ଭର ବଲ୍ଲଭ ମସ୍ତକେ ବହିଲେ ତାହା ହେ ।୬।

ନାଗ ନାଗରୀ ବୋଲନ୍ତି ଯେତେ ଥିଲୁ ଭୟ
ସେ ପଦସଙ୍କେତ ପାଇଲୁ ବଳରୁ ସଂସାରେ ଆମ୍ଭେ ଅଭୟ ହେ ।୭।

ରଖ କି ନ ରଖ ନାଥ ! ଶରଣ ତୋହର
ଗୌର ଦ୍ୱିଜ ଭଣେ ଆନ ମୁଁ ନ ଜାଣେ ଜଣେ ତ ଠାକୁର ହେ ।୮।

———

[ଶବ୍ଦ ଅଣଷ୍ଟରଣ]

## ଗୋପିକା ପାଞ୍ଚ

(ତାଳ ଝୁଲା)

ସଖି ! ଜଳଶ୍ୟାମଘନ ଯେବେ ସେ
ମୋହନ ମୁରଲୀ ବଜାଇବେ ଗୋ
ସ୍ବରୁ ଚନ୍ଦ୍ରମୁଖୀ ଚତୁରୀ ମାନଙ୍କ
ଚେତା ସ୍ୱହୁଁ ସ୍ୱହୁଁ ହଜାଇବେ ଗୋ ॥
କୁଳବଧୂମାନେ ଏଣିକ
ବାହାରିବେ ନାହିଁ କେଣିକ
ଯେବେ ବହୁ ବଣେ ମିଳିବେ ତା ପାଶେ
ଛନ୍ଦ କରି ମନ ମଜାଇବେ ଗୋ ।୧।
ବ୍ରଜେ ଯେତେ ନବ ଅବଳା
ବଳହାରେ ସେ • ନନ୍ଦବଳା
ଗୁରୁ ହୋଇ ରୁରୁନୟନୀମାନଙ୍କୁ
ସ୍ମରଶାସ୍ତ୍ର ଅର୍ଥ ବୁଝାଇବେ ଗୋ ।୨।
ନାରୀଙ୍କର ଲାଜ ମହତ
ଜାଣିଥାଅ ହେଲାଣି ହତ
ପାଶୋରି ଥିବ ଯେ କାମକଳା ବିଦ୍ୟା
ନଷ୍ଟପ୍ରୂ କଶୋର ହେଜାଇବେ ଗୋ ।୩।
କେତେ ରଙ୍ଗେ ଭୁଲାଇବେ ଟି
ବନେ ବନେ ବୁଲାଇବେ ଟି
ଫୁଲଶର ପୂଜା କରିବା ପାଇଁକି
କୁଞ୍ଜେ ଫୁଲଶେଜ ଶେଜାଇବେ ଗୋ ।୪।

ଦ୍ୱିଜ ଗୌର ଚରଣ ଭଣି
ଜାଣିଥାଅ ପ୍ରାଣମିତଣି !
ଚୁମ୍ବ ଆଲିଙ୍ଗନ କରିବେ ପ୍ରଦାନ
ଅଧରୁ ଅମିୟ ଭୁଞ୍ଜାଇବେ ଗୋ ।୫।

---

[ଶଙ୍କେ ଭରଣ]

## କାଳିଆ କରଣୀ

(କୁଞ୍ଜବନରେ କାଳିଆ ବୃତ୍ତ)

ଭଲ ସେ କାଳିଆ କେତେ ରଙ୍ଗରେ ଭୁଲାଇବ
ମାରି ନେତ୍ରକୁନ୍ତ ନାରୀ ମରମକୁ ଝୁଲାଇବ ॥ଘୋଷା॥

ବଜାଇ କଳ ବାଂଶରୀ ମଜାଇବ କୁଳନାରୀ
କଞ୍ଜନୟନୀମାନଙ୍କୁ କୁଞ୍ଜେ କୁଞ୍ଜେ ବୁଲାଇବ ।୧।

କରି ନାନା ପରିପାଟୀ ଗୃହୁଁ ଗୃହୁଁ ଯିବ ଘୋଟି
ଦ୍ୱିରଦଗମନୀଙ୍କର ଦମ୍ଭକୁ ଦୋହଲାଇବ ।୨।

ନାନା ଭଙ୍ଗେ ରସାଇବ ଅଙ୍ଗେ ଅଙ୍ଗ ମିଶାଇବ
ନାଗରୀଙ୍କ ଉରଜରେ ତା କରଜ ଚଳାଇବ ।୩।

ଯେତେ ଅବୋଧ ଯୁବତୀ ଶୁଣି ତା ଭଙ୍ଗି ଭାରତୀ
ବଳେ ଯାଚନ୍ତୋଇ ଯଉବନକୁ ତ ମୂଲାଇବ ।୪।

ଗଉର ଚରଣ ଭାଷେ ତୋଷିବ ଦମ୍ପତୀରସେ
ଜଘନ୍ ଦୋଳରେ ବଜେ କରାଇଣ ଝୁଲାଇବ ।୫।

---

[ ଶବ୍ଦେ ଏକତ୍ରଣ ]

## ମୁଁ ଜାଣି ଡରୁଥାଇ

(ଝୁଲ୍ଲ ଚଉପଦୀ)

ମୁଁ ଜାଣି ଡରୁଥାଇ ନାମ
ଶୁଣି ଥରୁଥାଇଁ ମୁଁ ଜାଣି
ଅସହଣୀଙ୍କର ମେଳ ସହ୍ବଣ
ଲୋକଲାଜେ ମରୁଥାଇ ମୁଁ ଜାଣି ॥
ବନେ ମୋତେ ଏକା ଦେଖିକରି
ବଳାତସ୍ର ଯାଚ ଦେଲା ପାନ ଗୋ
ବୋଇଲା ଏ ମୋର ଉଧାର ରହିଲା
ଦେବୁଟି ଅଧର ପାନ ଗୋ ମୁଁ ଜାଣି ।୧।
ବନେ ଉପବନେ ଲୁଚି ବସିଥିଲା
ମୋ ଦରଶନକୁ ଠାକ ଗୋ
ନଅର ହୋଇ କୁସୁମ ତୋଳୁଥିଲି
ପଛୁ ପକାଇଲା ଯାକ ଗୋ ମୁଁ ଜାଣି ।୨।
ଆଲୀ ଗୋଟିକ ଗାଳଦେଲେ ଯହୁଁ ସେ
ପଳାଇଲା ବଂଶୀଧରି ଗୋ
କହିଲେ କି ହେବ ସେହି ଦିନଠାରୁ
ରହୁନାହିଁ ବୁକୁ ଥିରି ଗୋ ମୁଁ ଜାଣି ।୩।
ଭଲ ମନ୍ଦ ନନ୍ଦସୁଅଠାରେ ନାହିଁ
ମାପ ମୂଳ ତାର ଖଣ୍ଟୀ ଗୋ
କଞ୍ଜନୟନାଙ୍କି ଏକାନ୍ତେ ଦେଖିଲେ
କୁଞ୍ଜକୁ ନଅଇ ଛୁଟି ଗୋ ମୁଁ ଜାଣି ।୪।

ଗଜର ଚରଣ   ବୋଲେ   ଜାରପଣ
ମୋଠାରେ   ପୁଣ   ଅଧିକା   ଗୋ
ଜାଣି ଏ ସବକୁ   ମୋର   ବଲ୍ଲଭକୁ
କଣଥାଇ ସଇ ଲେଖା ଗୋ ମୁଁ ଜାଣି ।୫।

—·—·—

[ଶଦେ ବର୍ତ୍ତଣ]

କହ୍ନାଇ ଆନ୍ଦୋଳ

[କେତେ ଛନ୍ଦ  ଜାଣେ  ନନ୍ଦରାଜାର  ହିକ ପିଲାଟି  ବୃତ୍ତ]

ଘୃତ ଚ ନ  ଗଲା ବେଳେ କହ୍ନାଇଁ ଆନ୍ଦୋଳ ଏ ଗୋ ମା ॥
ନନ୍ଦ ଘରେ କଅବା  ନାହିଁ
ତାର ସ୍ନେହ ନ ଥାଏ ତହିଁ
ଗୃହେ  ମୋ  ପୁରକୁ ଧାଇଁ   ଆସୁଥାଇ
ଦାଣ୍ଡେ ହୋଇ ଧୂଳ ବୋଳ ଏ ଗୋ ମା ।୧।
ଜାଣୁ  କନା  ପରାଣମିତ
କାହ୍ନୁ ମୋର  ହୃଦୟବୃତ୍ତ
ପ୍ରାଣୁଁ ତ   ଅଧିକ   କର   ମଣିଥାଏ
ଆଣୁ କୋଳେ କାଖେ ତୋଳି  ଏ ଗୋ ମା ।୨।
ପୟ ଘୃତ   ଶାକର   ଦଧି
ତାହା ପାଇଁ ଥାଏ ସଂପାଦ
ନୟନରେ ଥରେ ଦଣ୍ଡେ  ନ  ଦେଖିଲେ
ହୃଦ  ହୋଇଯାଏ ଗୋଳ ଏ ଗୋ ମା  ।୩।

ଗୌର ଦ୍ୱିଜ ଭଣେ ଏ ରସେ
ଗୋପୀଙ୍କି ସେ ଯନ୍ତିକ ରସେ
ମୁଁ ତା ଅଛୁ ଜାଣି କୁଞ୍ଜବନେ ଟାଣି
ନେବ କର କୋଳାକୋଳ ଏ ଗୋ ମା ।୪।

---

[ଶଙ୍କେ ଭେଟଣ]

## କାହ୍ନୁ ଗୁଣ

ପିବୁକ ପରତେ ଲୋ ମାଁ ! ତୋର ଅନ୍ତରଗତେ ଲୋ !
ଏଡ଼କ ଅଭିଲା ପିଲା ସେ କାଳିଆ ସତେ ଲୋ ॥

ନୂଆ ଗୁଆଲୁଣୀ ଛୁଆ ଭୂଆଷୁଣୀ
ସାଥିରୁ କ ସୁଖ ପାଏ
ଯାଆନ୍ତେ ଗାଧୋଇ କାହ୍ନିକ ମାଧୋଇ
ପଛରେ ଗୋଡ଼ାଇ ଥାଏ ଲୋ ।୧।

ଅତ ସଗଗରେ ଧଇଲେ କାଖରେ
କ ନବଡ଼େ ଧରେ ଜାଙ୍କି
ନନ୍ଦର ପୁଅକୁ ପଦର ହୋଇଲେ
ରଖିବ କ ଆଉ ବାକ ଲୋ ।୨।

ଏ କ ବଡ଼ମ୍ବନା ସେ ଛଇଲ କହ୍ନା
ଟାକଥାଏ ଘାପମୂଳେ
କେତେ ଅପାଟକ ଛଗ ସେ ମେଲଇ
ସରମ ନ ପାଇ ଠୁଳେ ଲୋ ।୩।

ଗଜର ଚରଣ ବୋଲେ ଆଚରଣ
ତାର ମୁଁ ନ ଥିଲି ଜାଣି
କହନ୍ତ ନଟିଆ ଯମୁନାତଟିଆ
ମୋହନ ମୁରଲୀପାଣି ଲୋ ।୪।

———

[ଶଙ୍ଖ ତଳ୍ପତରଣ]

ନବ ଛଇଳ ରେ!

[ଅଜ୍ଞାନ ତମିରେ ଚକ୍ଷୁ ବୃତ୍ତେ]

ନବ ଛଇଳ ରେ ଗୁହାଁ ଛଇଳ ଛବକି
ଅଧର ଆଗ୍ର ନନ୍ଦଇ ପ୍ରଗ୍ରତ ରବକି । ଘୋଷା ।
କଟାକ୍ଷ ଗୁହାଣି ପାଣି କରଇ ପବକ
ଏଥିକ କେଉଁ ଉପମା ଦିଶିବ କବକ ।୧।
ଯାର ବଂଶୀଘୋଷ ବଶ କରଇ ଗାଭୀଙ୍କି
ଭବଲ ତେଜ ଅନାଇଁ ରହନ୍ତି ଭୃବକ ।୨।
ଅବଳା ହୃଦୟ କେତେ ନ ଯିବ ଦ୍ରବ କ
ଯାତ ଯୌବନ ରତନ ଦେବେ ତାକୁ ବଳ ।୩।
ତା ଆଶାରେ ଚନ୍ଦ୍ରାବଳୀ ପୂଜଇ ଦେବାଙ୍କି
ଭୁ ପଗ ଭବୁ ମୁଁ ସତେ ତା ଦାସୀ ହେବ କ ।୪।
ଗୌର ଦ୍ୱିଜ ଭଣେ ଗ୍ରଧେ ! ଥରେ ମୁଁ ଯିବ କ
ତୋ ପାଇଁ ତା ପାଦ ଧର ଥରେ କହିବ କ ।୫।

———

[ଖେମଟା ପଞ୍ଚତାଳ]

## ଗୃହାଁ କଦମ୍ବମୂଳକୁ

[ କଏ ସେ କେଳିକଦମ୍ବ ତରୁମୂଳେ ବୁଲେ ]

ପ୍ରାଣ ସଜନ ରେ ! ଗୃହାଁ କଦମ୍ବ ମୂଳକୁ
ଯୁବା ଦମ୍ଭ ହର ବାଙ୍କ ମୋହନ ଚୂଳକୁ ॥

ଅନା ନେତ୍ର ପୂର୍ଣ୍ଣ କର କର୍ଣ୍ଣ କୁଣ୍ଡଳକୁ
ଚୂର୍ଣ୍ଣ କୁନ୍ତଳ ଆବୃତ ମୁଖମଣ୍ଡଳକୁ ।୧।

ଛନ୍ଦ ବନମାଳୀ ପିନ୍ଧ ପୀତ ଦୁକୂଳକୁ
ଏ ଛବ ରଖିବ ଟିକ ଯୁବତୀକୁଳକୁ ।୨।

ସୁରନାରୀ ଦେଖିଲେ ଲଭିବେ ବାତୁଳକୁ
ଆକାଶରୁ ଖସି ନକ୍ଷେ ପଡ଼ିବେ ତଳକୁ ।୩।

ଗୃହାଁ ଆଜାନୁଲମ୍ବିତ ବାହୁଯୁଗଳକୁ
କା ବାଞ୍ଛା ନୋହିବ ବସିବାକୁ ତା କୋଳକୁ ।୪।

ତା ଶୋଭା ଶାର୍ଦ୍ଦୂଳ ସଖୀଗଙ୍କ ଗଳକୁ
କମିଣ ମାଧବଙ୍କ କଣ୍ଠ ଦେବ କମଳକୁ ।୫।

ଘନକେଶୀ ମନ କରଛନ୍ତି ପା. ତଳକୁ
କାଶଦାସୀ ଆଶ ରଖି ଥା ତା ପା' ତଳକୁ ।୬।

ଗୌର ଦ୍ୱିଜ ଘଷେ ବ୍ରଜ ଭୂପାଳ ବାଳକୁ
କାଲି ଆଣି ଭେଟାଇବ ଏତକ ବେଳକୁ ।୭।

---

[ଶବ୍ଦ ଛନ୍ଦ]

## ଆଉ ଦନେ ନ ରୁଷିବୁ

[ନରେଖ ଗୃହାଁରେ ବୃତ୍ତ]

ଏଣୀନୟନରେ ! ଗୃହାଁ ବାରେ ତୁ ଏଣିକ
ଛଇଲ ନଟ ନାଗର ମୁକୁଟ ମଣିକ । ଘୋଷା ।
ଯେ ଦେଖିବ ଥରେ ତା କଟାକ୍ଷ ଗୃହାଁଣି କ
ଥର ନ ଯାଇ କ ରଖି ପାରବ ଆଣିକ ।୧।
ଏ ସସାରେ କଏ ଶୁଣି ତା ଇଙ୍ଗିତ ବାଣୀ କ
ପତିବ୍ରତ ଧର୍ମ ଫିଙ୍ଗି ଦେବ ସେ ପାଣି କ ।୨।
ଏ ସଂସାର ଶୋଭସାର ସମ୍ପତ୍ତି ଗୁଣିକ
ବଗୃର ଗୃର ଆନନ ଅଛୁ ନର୍ମାଣିକ ।୩।
ଧନ୍ୟ ବୋଲବା ଏ ରୂପଗଡ଼ା ବନ୍ଧାଣି କ
ରସେ ରସାଣି ଦେଇଛୁ ପୀୟୂଷ ପାଣି କ ।୪।
ରବପୂଜା ସୁକୃତ ତୋ ଦର୍ଶନ ଏଣିକ
ଆଣି ଜରେ ଲମ୍ବା ମାଳ ରତନ ମଣିକ ।୫।
ଗୌର ଦ୍ୱିଜ ଭଦ୍ରେ ସାଧେ ଶୁଣ ମୋ ବାଣୀକ
ଆଉ ଦନେ ନ ରୁଷିବୁ ମୁରଲୀପାଣି କ ।୬।

[ଶବ୍ଦେ ସଙ୍କଳଣ]

## ମୋହନ ମାଧୁରୀ

(ରାଗ ରାମକେରୀ)

କେ ବୋଲଇ ! ସଖି ଦେଖ ଗୋ ଶ୍ରୀକୃଷ୍ଣର ବଦନ
ବିମ୍ବାଧରେ ହାସ ପ୍ରକଟ କି ଏ ଶୋଭାସଦନ ।୧।

ଶିରେ ଶୋହେ କେକକଳାପ ଚର୍ନ୍ଦ୍ରୀ ବକୁଳ ବେଢ଼ା
ଜାତି ଯୁତ କୁନ୍ଦ ସେବନ୍ତି ସଙ୍ଗ-ବରତ-ଚୂଡ଼ା ।୨।

କର୍ଣ୍ଣଯୁଗେ ରତ୍ନ କୁଣ୍ଡଳ ଭାଲେ ଚନ୍ଦନ ବିନ୍ଦୁ
ନୀଳ ନବଘନେ ଉଦୟ କିବା ହୋଇଛୁ ଇନ୍ଦୁ ।୩।

ବଙ୍କ ଭ୍ରୂରୁ ଶରଚାପ ଗୋ ରୂପାଣିର ଛଟକ
ଲଖି ରହେ ସଖି ! ମରମେ ମନ ମୀନ ଅଟକ ।୪।

ଜମ୍ବୁନଦ ହାର ପଦକ କମ୍ବୁକଣ୍ଠେ ଶୋଭିତ
ବୈଜୟନ୍ତୀ ବନମାଳ ଯେ ଜାନୁଯାଏ ଲମ୍ବିତ ।୫।

କଟୀତଟେ ପୀତ ବସନ ହେମ କଙ୍କଣ କରେ
ଗୋଟି ଗୋଟି କ୍ଷୁଦ୍ର କିଙ୍କିଣୀ ଶୋଭା ମଧ୍ୟଦେଶରେ ।୬।

ଚରଣେ ଝୁମୁକ ନୂପୁର ରତ୍ନ କଟାଉ ସାଜେ
ନଟବର ବେଶ ହୋଇଣ କରି ଅଛନ୍ତି ବିଜେ ।୭।

ଗଉର ଚରଣ କହେ ଗୋ କରିବା କି ବରଣ
ଆସ ଗୋ ସମସ୍ତେ ପଶିବା କାହ୍ନୁ ପାଦେ ଶରଣ ।୮।

———

[ଶବ୍ଦେ ଅଠରଣ]

## ନାଗର ଛଇଳ କହ୍ନା

ପ୍ରାଣ ସଙ୍ଗିନରେ ! କଦମ୍ବ ମୂଳକୁ ଅନା
ହିଭଙ୍ଗ ଭଙ୍ଗିରେ କ ଶୋଭା ଧଶୁଛୁ ନାଗର ଛଇଳ କହ୍ନା ॥
କୂଳ ମୂଳ ଛଡ଼ା ଧଇର୍ଯ୍ୟ ଉଜୁଡ଼ା ସଖଙ୍କ ବରତ ଷେନା
କଟାକ୍ଷେ ନରେଖି ଠାର ଭୂରୁ ଆଖି ମତ୍ତ କରୁଅଛୁ ବଣା ।୧।
କ ଡୁନ୍ଦର କର ବଜାଏ ବାଂଶଖ ଧର ସବୁଙ୍କର ଘେନା
କାନରେ ପଶିଣ ଜ୍ଞାନ ହଜାଏ ଏ କଫ ମା ବଡ଼ମ୍ବନା ।୨।
ଦେଖି ତା ଆରମ୍ଭ କାଖୁ ଖସେ କୁମ୍ଭ ଦମ୍ଭଗିଣ ହୁଏ ଚୂନା
କେଉଁ ମନ୍ତ୍ରବଳେ ଏତେ ସବୁ କରେ ତାକୁ ଏକା ତାହା ଜଣା ।୩।
ଏ କ ପରମାଦ ନ ଚଳଇ ପାଦ ସେ ମରମ କହ କନା
ଗୌର ହିଜ ଭଣି କପାଂ ଗୋ ଭଲେଣି ସେ ଆମ୍ଭ ସଙ୍ଗାଳ ସିନା ॥

---

[ଶବ୍ଦେ ଅଣଳବ୍ଣଶ]

## ନୀପମୂଳ କିଶୋର

କେ ବୋଲଇ ଦେଖ ଦେଖ ମିତ
ତରୁ ମୂଳେ ଅଛୁ ଆଚମ୍ବିତ ।୧।
କବା ସେ କାମ ମୋହନ ଛବ
ଦେଖି ମନ ନେଇ ଯାଏ ଦ୍ରବ ।୨।
କେ ବୋଲଇ ଦେଖ ଦେଖ ଆଳ
କବା ଏ ମଳ ରତନ ମାଳୀ ।୩।

ଏ ବଚନ ତାର ତହୁଁ ଶୁଣି
ବୋଲେ ଶୁଣ ପ୍ରାଣ ସଙ୍ଗାତୁଣି ! ।୪।
କଷି ଯାଏ ଜର ଗୃହୁଁ ଦୂରୁଁ
ନଟେଷ୍ଟ ଏ ନବ ତମାଳ ତରୁ ।୫।
କେ କହେ ସେ ନୋହେ ସଖୀ ଶୁଣ
ଅଞ୍ଜନ ପୁଞ୍ଜ ନଷ୍ଟପୁ ଜାଣ ।୬।
କେ ବୋଲେ ସଜନ ! ନୁହ ବଣା
ମାଳ ପର୍ବତ ଏ ଗଳୁ ଜଣା ।୭।
ଏହି କାଳେ ଏକ ଗୋପୀ କହି
ମୋହଠାରୁ ଶୁଣ ପ୍ରାଣସହି ! ।୮।
ନଚ୍ଛିଷ୍ଟ ଏ କାଳନ୍ଦୀ ଜଳରାଶି
ଭ୍ରମଇ ଉଜାଣି ବହି ଆସି ।୯।
ସ୍ଥକତ ହୋଇଣ ମାପମୂଳେ
ରହିଛନ୍ତି ଦେଖ ବେନଡୋଳେ ॥
କେ ବୋଲଇ ନ ପାରିଲ ଜାଣି
ହେଲେ ହେବ ଇନ୍ଦ୍ରବର ଶ୍ରେଣୀ ॥
ଏହା ଶୁଣି କେଉଁ ଗୋପୀ ଭାଷି
ମିତ ମୁଖ ଗୃହୁଁ କହେ ହସି ।୧୨।
ବୋଲେ ସଖୀ ବଦ୍ଧକତ ନୁହ
ନକଟକୁ ଯିବା ରହ ରହ ।୧୩।
ନଚେଖିବା ନେସେ କ ପଦାର୍ଥ
ତେବେ ସିନା ପ୍ରାଣ ହେବ ସାର୍ଥ ॥
କେ କେତେ ପ୍ରକାରେ କହେ ବାଣୀ
କେ ବୋଲଇ ଇନ୍ଦ୍ର ନୀଳମଣି ॥

ଏହା ପ୍ରାପ୍ତ ସବ ଗୋପନାରୀ
ନାନାବିଧ ଉପମା ମାନ କରି ।୧୭।
କୁଞ୍ଜମୁରେ ପ୍ରବେଶ ହେଲେ ଯାଇଁ
ତ୍ରୈଲୋକ୍ୟ ମୋହନ ରୂପ ଚାହିଁ ॥
ଅପଲକ ନେତ୍ରେ ସବୁବାଳୀ
ଆନନ୍ଦରେ ଦେଲେ ହୁଳହୁଳି ।୧୮।
ଗଉର ଚରଣ ଏହି କାଳେ
ମାନସେ ଭାବନା କରି ଭୋଳେ ॥
ଗୋପୀଙ୍କ ପଛରେ କରଯୋଡ଼ି
ସାଷ୍ଟାଙ୍ଗେ ଚରଣ ତଳେ ପଡ଼ି ।୨୦।

———

[ଶବ୍ଦ ଗ୍ରନ୍ଥଣ]

## କାଳିଆ କଳଙ୍କ ଅଠା

(ରାଗ ମୋହନା ତାଳ କର୍ତ୍ତାଳି)

ରାଧେ ପ୍ୟାରୀ ! ଗୋ ! ବଂଶୀଧାରୀ ।
କପଟ ପଟଳି ପୀରତି ଜାଣେ କହ୍ନାଇଁ ଦଗାଦାରୀ । ଘୋଷା ।
ମୋହନ ବଚନ ମିଠା ଖଣ୍ଡ ସରପୁଳି ମିଠା ।
ଚାଖିଲେ ଅଙ୍ଗରେ ଲାଗି ରହିବଟି
କାଳିଆ କଳଙ୍କ ଅଠା ।୧।
ପୁଣି ବୋଲେ ରହ ରହ ଗୋ ଆଜ କାହିଁ ଯିବୁ କହ ?
ଛପି ଛପି ପରା କେତେ ଯାଉ ଥାଉ
ନ ଦେଖାଇ ମୋତେ ଦେହ ।୨।

ଏହା ଥିଲା କାହିଁ ଶୁଣା ଗୋ ବାଟେ ଖୋଳିଥାଇ ଖଣା
ଖସି ପଡ଼ି ଜଳ କଳସି ଭାଜଇ
ନାରୀଙ୍କ ନ ଥାଏ ଜଣା । ୩ ।

ଫିଙ୍ଗି ପୁଣ ନଡ଼ମାଟି ଗୋ ! ଫିଟାଏ କବାଟ ତାଟି
ଶୋଇବା ଠାବରୁ କେତେ ଚଞ୍ଚଳରେ
ଅଞ୍ଚଳ ନଅଇ କାଟି । ୪ ।

ମାରେ ପର ଭୂରୁକୁଟା ଗୋ ! ପଦ୍ମରେ ସେ ପୀତପଟା
ଏ ଗୋପନଗରେ ପ୍ରତି ଘରେ ଘରେ
ନିତି ବସିଥାଏ ହାଟ । ୫ ।

ରୋପେ ସିନା କରି ଘର ଗୋ ! ନିତି ଏହି ହରବର
ମାଧୋଇ ଲାଗି ମା ଯମୁନା ଶାଧୋଇ
ଯିବାକୁ ହେଲାଣି ଡର । ୬ ।

ଲାଗି ଥାଏ ଜଳଘାଟି ଗୋ ଜାଣେ କେତେ ପରିପାଟୀ
କଞ୍ଜନୟନଙ୍କି ନିକୁଞ୍ଜ ବନରୁ
ପଛରୁ ନଅଇ ଲୁଟି । ୭ ।

କେ ଭଲ କହିବ ଆଉ ଗୋ ନନ୍ଦ ତନୟର ଦାଉ
ତା କଥା ମନରେ ପଡ଼ିଯାଉଥିଲେ
ବାହାର ଛଡ଼ଇ ହାଉ । ୮ ।

ଗଉର ଚରଣ ଗାଇ ଗୋ ! ଶୁଣ ବନୋଦ୍ଧମା ରାଇ
ତୋ ମୁଖ କମଳ ଚୁମ୍ବିବା ପାଇଁକି
କଳା ମଧୁକର ବାଇ । ୯ ।

[ଶବ୍ଦେ ଏକତାଳି]

## ବାଜେ ମୋହନ ବାଂଶରୀ

ବାଜେ ମୋହନ ବାଂଶରୀ ଗୋ ରାଧେପ୍ୟାରି ! ॥
କି ମନୋହର ଘୋଷଣ ଶୁଣ ଁ କର୍ଣ୍ଣଡେରି
କାଳିନ୍ଦୀ ତଟରୁ ପରି ଆସୁଛି ପ୍ରସରି ଗୋ ।୧।
ସା ରି ଗ ମ ପ ଧ ନି ସା ସ୍ୱରକୁ ଉଚ୍ଚାରି
ପଞ୍ଚବରତ ବଢ଼ାଇ ଦେଉଅଛି ସାରି ଗୋ ।୨।
ରସି ନିକଟକୁ ଡାକ ଗଲେଣି ବାହାରି
ଧୃତି-ସମ୍ଭାଳି ରହିବ କେଉଁ ବ୍ରଜନାରୀ ଗୋ ।୩।
ସୁଗୁଣ ସୁନ୍ଦର ପଣ ଚିତ୍ତରେ ବିଚାରି
ତା ପରିହରି ନୋହିବ କେ ବା ନ ପଚାରି ଗୋ ।୪।
ଭୁ ତ ନୂତନା ଛଇଳୀମଣି ସୁକୁମାରୀ
କି ନୋହିବୁ ସଙ୍ଗେ ହେଲେ ମୀତ ଅଭିସାରୀ ଗୋ ।୫।
ଗଉର ଚରଣ କହେ ସେ ମୁରଲୀଧାରୀ
ତୋ ନାମେ ବାଉଛି ବେଣୁ ହେବାକୁ ଫସ୍ୱରୀ ଗୋ ।୬।

---

[ଶବ୍ଦେ ବସ୍ତୁାକଣ]

## କପଟୀ ଲମ୍ପଟୀ ଶଠ

(ରାଗ ନଳଣ୍ଡ ଗୌଡ଼ା ତାଳ ଝମ୍ପା)

କୁଞ୍ଜରେ କି ଗୁଞ୍ଜେ ସୁମନାରେ
ଶ୍ୟାମ କଳା ମଧୁଲିଟ ବଟପୀ ବାଧାରେ । ଘୋଷା ।

ଯାଅ ଗୋ ସଜନୀ କହ କେତେ ହେଜ ଉହରହ
ସେ ମୋହନ ସ୍ୱନ ଶୁଣି ମରେ ବିରହରେ ।୧।
ଜାଣେ ସେ ଚୁମ୍ବନ ବିଧି ମକରନ୍ଦ ପାନ ସିଦ୍ଧି
ଯେତେ ଅନୁସରେ ଫୁଲ ସରଇ ଲଜରେ ।୨।
ସେ ମୋହନ ବଂଶୀଧାରୀ କେବେ ନୁହନ୍ତ କାହାର
ଆମ୍ଭେ ସବୁ ସଖୀ ଝୁରି ରହୁ ଭବନରେ ।୩।
କପଟୀ ଲମ୍ପଟୀ ଶଠ ହୃଦୟ କମଠ ପୃଷ୍ଠ-
ଠାରୁ ଗୋ କଠିନ ଗୌର କହେ ଏ ରସରେ ।୪।

———

[ଶବ୍ଦ ଚେୟୂଳଶ]

## ଆଜ ପାରବୁକ ତା ପାଲରୁ ବର୍ତ୍ତି

(ଗବଧ ଚୋହଲଗି ଶ୍ୟାମ କ ବଞ୍ଚ-ବୃତ୍ତ)

ରେ ଉସବନ୍ତ ! ଆଜ ପାରବୁ କ ତା ପାଲରୁ ବର୍ତ୍ତି ॥

କାହିଁକରେ ଚନ୍ଦ୍ରାନନା ଏକା ତୁ ଗଲୁ ଯମୁନା
ବେଳୁଁ କରୁଥିଲ ମନା ନ ଶୁଣିଲୁ ସୁଲୋଚନା
ବାଇକଲା ତୋତେ ସେ ମୂରତ୍ତା ।୧।

ତା ମଧୁର ବଂଶୀତାନ ଗୀତକୁ ଡେରିଲୁ କାନ
ଏବେ ତ ବ୍ୟାଧି ବିଷମ ଘୋଟିଗଲା ଅନୁପାନ
ନାହିଁ କରୁ ଏଥିକ ଶ୍ରୀମତୀ ।୨।

ବସ୍ତୁର ପାରିଲୁ ନାହିଁ କୁଞ୍ଚୁହଳେ ଦେଲୁ ଗଣ୍ଠି
କୂଳରୁ ଭଛନ୍ନ ହୁବ ହେଲୁଟି ରେ କେମାଦେଇ !
ଏ ସଂସାରେ ତୋର କେଉଁ ଗତି ।୩।

ଅଖଣ୍ଡେ ଗଲୁ ତ ପଡ଼ି ଘାରିହେବୁ ଝୋଳଘଡ଼ି
ସେ ଜାଣେ ମୋହନମା ଜଡ଼ି ଚନ୍ଦ୍ରାରେ ଯିବୁଟି ସଡ଼ି
ଅରଜିଲୁ ଜାଣି ଅନ୍ତରତ ।୪।
ଯା ହେବାର ହେଲା ଧନ ଭଜ ସେ ନନ୍ଦନନ୍ଦନ
ବ୍ୟାଧି ହେବ ଉପଶମ କୁଞ୍ଜେ ହୋଇଲେ ମିଳନ
ଗୌର କଥା କର ସନମତ ।୫।

---

[ଶଙ୍କ ଭଞ୍ଜବଳଣ]

## ନନ୍ଦସୁତ ମନ୍ଦ ବୋଲ ଜାଣି ତ ନ ଥିଲ

ସଙ୍ଗ ! ତାଙ୍କୁ ସାନ କ ବସୁରୁ
ଶୁଣିବୁ ଟି ଗୁପତ କଥାଏ ମୋହଠାରୁ । ଘୋଷା ।
କେ ଅବୁଦ୍ଧି ବୁଦ୍ଧି ମୋତେ ଦେଲା ଲୋ ମିତଣି !
ବାହାର ପଡ଼ିଲି ଏକା ଘରୁ କୁମ୍ଭ ଘେନି ।୧।
ନନ୍ଦସୁତ ମନ୍ଦ ବୋଲ ଜାଣି ତ ନ ଥିଲି
ତରତର ହୋଇ ଯମୁନାକୁ ଧାଇଁଗଲି ।୨।
ନଦୀକୂଳ ବନଗୋଠ ତାର କ୍ରୀଡ଼ାସ୍ଥଳୀ
କାହିଁ ଛପିଥିଲା କହ୍ନା ପାଶେ ଗଲା ମିଳି ।୩।
ତାଙ୍କୁ ଦେଖି ମୋ ପିଣ୍ଡରୁ ଉଡ଼ିଲା ସାହସ
ବସୁରଳି ନଷ୍ଟ ଏ ତ ଆଜ ଗଲି ନାଶ ।୪।
ଗୃହୁଁ ବୃହୁଁ କାହୁଁ କ କଥା ଏ ହେଲା ମେଳ
କହିବାକୁ ଲଜ ଶୁଣି ଆଚମ୍ବିତ ହେଲ ।୫।

କ କଟିବ କାହିଁ ଯିବ ନ ବଳିଲ ପଥ
ଉଦବେଗେ ପୂର୍ଣ୍ଣ କଲ ତାର ମନୋରଥ ।୭।
ତଳକୁ ଲପନ ପୋତ ପୂରକୁ ଅଇଲ
କହାକୁ ନ କହି ତୁନି ହୋଇ ମୁଁ ରହିଲ ।୭।
ଏଡ଼କ ହଟିଆ ପୀତପଟିଆ ନଟିଆ
ଗୌର ବୋଲେ ସେ ତ ଗେ ପୀତହଲମଟିଆ ।୮।

---

[ଶଢେ ଚଇଁଗୃଳଣ]

## ସଙ୍ଗାତ ଟୋ କାହୁଁ ଥିଲ କ

[କାହିଁଗଲେ ମୁରଲୀ ଫୁଙ୍କା ବୁଉ]

ସଙ୍ଗାତ ଗୋ ! କାହିଁ ଥିଲ କ
ଯମୁନା ପାଣିକ ଯାଉଥିଲ କ
କଳା କହ୍ନାଇଁକ ଦେଖିବା ପାଇଁକ
ନସର ପସର ଧାଇଁ ଥିଲ କ ।।
କପଟ ଗୃତ୍ତୁସ ଦେଖାଇ ଚତୁର
ମାତମୂଳକୁ ଧଂସାଇ ଥିଲକ
ସୁକୁଟ ଦେଖାର ଉକୁଠକୁ ଶୁଣି
ବୁକୁ ଦୁକୂଳ ଖସାଇ ଥିଲ କ ।।
କଣି କଣି ଟେଣି ଝିଣି ଶୁଭିବାକୁ
ଅଣ୍ଟାରେ ମେଖଳା ନାଇଥିଲ କ
ଦୁମୁ ଦୁମୁ ଗୃଳ ଝୁମୁଝୁମୁ କଣ
ନୂପୁର ବାଜେଣି ବାଇଥିଲ କ ।।

ସଙ୍ଗ ଆଳୀ ଗଣେ ଯାଉ ଅନ୍ତରେ
କେଶିକ ଦେଖିଛେ ସ୍ୱପ୍ନ ଦେଲ କ
ଅନାଉଁ ଅନାଉଁ ଅବା କାହ୍ନୁ ଚନ୍ଦ୍ର
ଅନୂଲ୍ୟ ଦରବ ପାଇ ଥିଲ କ ॥
ସେ ବନମାଳୀକ ଧନମାଳୀ ବୋଲି
ତମାଳରୁ ପଦେ ଗାଇଥିଲ କ
ବଳେ ଧରୁ ଧରୁ ମଧୁର ଅଧରୁ
ଦରଘେନିବା ପାନ ଖାଇ ଥିଲକ ॥
ପ୍ରମତ୍ତ କୁଞ୍ଜର ଗମନା ଗୋ କେଳି
କୁଞ୍ଜ କନ୍ଦରକୁ ଯାଇ ଥିଲ କ
ଗୌର ଦ୍ୱିଜ ବୋଲେ ପୁଲକ ଅନ୍ତରେ
ପରବ୍ରହ୍ମଙ୍କୁ ଧ୍ୟାଇଥିଲ କ ॥

---

[ଶ୍ରୀଦେ ଛନ୍ଦ ଲକ୍ଷଣ]

ବୃଷଭାନୁ ଜେମା ରାଧିକା

(ନନ୍ଦ ସୁତ ମୋର ନାୟକା ବୃତ୍ତି)

ବୃଷଭାନୁ ଜେମା ରାଧିକା ! ଯମୁନା ପାଣିକି ନ ଯିବୁ ଏକା
ନେବ ହରୁମତ ସାଗର ମଦନ
ବାଟ ଘାଟ ଯଗା ସେ ଗିରିଟେକା ॥
ନିତ ଯାଉ ଆସୁ ଯମୁନା ଯାଧା କରେ କାଳଆ ସୁନା
ରଖିଥାଏ କୁହା ଭଙ୍ଗି କରେ ଚୂନା
କାଖର କଳସୀ ଫିଙ୍ଗିଣ ଟେକା ।୧।

ସେଥିରୁ କେ କି ଦୃଷ୍ଟି ପାଏ    ଦ୍ରାକ୍ଷାଇଁ ସୁଖ ଗୁଥାଏ
କଣ୍ଠ ନିଘଞ୍ଚ ଚିତ୍ରା    କେଳି ଶ୍ୱେ ଦମ୍ଭୁନ
ନ ବିଧାନ ନାଳ ଅଧମ ଦଣ୍ଡା ।୨।
ନକର ମୁଁ ଜଗତ୍ରି ଚୋର    ତାକୁ ନ ମିଳୁଛି ପରଛେ
ଚୋରି କେତ୍‌ରେ ଭୁ    ଲୋଚକ ପୋଛିବୁ
ନବାଶ ନ ପାଶ ଗୁଣରୁ ଢଳା ।୩।
ଦ୍ୱିଜ ଗୌର ଚରଣ ଭଣି    ପାଦ ଗୁଲୁଥିବୁଛି ଗଣି
ଉଚ୍ଛୃଙ୍ଖଳ ପଣେ    କାହ୍ନୁକୁ ରସିଲେ
ତୋ ନାମେ ଉଡ଼ବ ଜଗା ପତାକା ।୪।

———

[ଏକଣ ସଚଗୁଳଣ]

## ନାଗରୀଗରବଗଞ୍ଜନବାନା

(ନ କହେ ଏ ଗିର ଦେହ ବୃନ୍ତେ)

ଘେନ ମୋର ମନା ଗୋ ମତ୍ତଗଜଗମନା !
ଜାଣି ଥା ସୁମନା ସଙ୍ଗସଖୀ ବନା
ଏକା ହୋଇ ନ ଯିବୁ ଛି ଯମୁନା । ଘୋଷା ।
ଯାର ନାମ ଶ୍ୟାମସୁନ୍ଦର    ଜାଣିଇ ସେ କେତେ ସୁନ୍ଦର
ହଟି ମୁରଲୀ ଅଗ୍ରେତ ବାନ୍ଧିଥାଏ
ନାଗରୀ ଗରବ ଗଞ୍ଜନ ବାନା ।୧।
ରଖିଥାଏ ମନ୍ତ୍ର ଧୂଳିକ    ପେଳି କୁଳବତୀ ବାଳିକ
ଜଡ଼ାଇ ମନକୁ କାଢ଼ଇ ନଷ୍ଟଇ
ନକୁଞ୍ଜ ବନକୁ ନିଅଇ କହ୍ନା ।୨।

ଗୋପ ନବ ନାୟିକାଗଣ ଲୁଚ କୃଷ୍ଣକର ଚରଣ
ନୋହୁଛୁ ବୋଲି କେ କହୁପାରିବ କ
ସହୁ ! ସମସ୍ତେ ପଡ଼ିଲେଣି ଚହ୍ଲା ।୩।
ଲୁଚ ଥାଇ ଲତା ତଳରେ ନଣ୍ଦ କୁଲ ଶାପ ମୂଳରେ
ଛପି ଛଇଲ ଲୁଚ ଅସି ମେଣଇ
ହଚୁ କୋଳ କରେ କୂଳ ଅଙ୍ଗନା ।୪।
ଦ୍ୱିଜ ଗୌର ଚରଣ ଭଣି ଜାଣିଥାଅ କଶୋରୀମଣି !
ତୋ ସଙ୍ଗମେଳଣ ହେବ ଯେଉଁଦନ
ସମ୍ପୂର୍ଣ୍ଣ ହେବ ତା ମନଜାମନା ।୫।

———

[ଶବ୍ଦେ ଅଠଗୃଳଣ]

ଇନ୍ଦ୍ରନୀଳମଣିତରୁ

(ରାଗ ତୋଡ଼ପରଜ ତାଳ ଆଠତାଳୀ)

ହଙ୍କ ତ ! ମୋହନ ମୁରଲି ଧର
ସେ ଭଙ୍ଗୀ ଯା କରେ ସସାର ଯାକରେ
ଖୋଜଲେ ନ ଥିବ ପତ୍ର ରେ । ଘୋଷା ।
ଜାଣେ କ ମୋହମ ଗୋପକୂଳମଣି
ସୁବର୍ଣ୍ଣଙ୍କ ଦମ୍ଭହର
ଜମିଷେ ବସ୍ତ୍ର ଲୁହଇ କଶୋର
ତଳକର ନେତ୍ରଠାରେ ।୧।
କୋଟି ସୃଷ୍ଟିସାର ଶୋଭାର ସମ୍ଭାର
ହୋଇଛୁ ଯେ ଅଙ୍ଗେ ଭର

ଅଛୁ କ ଉପମା ଅନୁପମ ରମା
ଆଶ୍ରିତ ମୂର୍ତ୍ତିକ ଧରି ରେ ।୨।
କେଉଁ ଗଗନରୁ ଖସି ପଡ଼ିଛୁ ମା
ଇନ୍ଦ୍ର ନୀଳମଣି ଛଇ
କୋଟିଏ ହୋଇଲେ କୋଟି ସଂଖ୍ୟା କାମ
ସମ ନୋହିବେ ତା ପଇ ରେ ।୩।
ଉସେ ଗୌର ଭଣି ବରଜରମଣୀ
ମାନଙ୍କ ମହତ ଯଇ
ତୋତେ ଅଛୁ ଥାକ ରଖିବ କି ବାକ
ବେଳଙ୍କୁ ମୁଚନାମଣି ରେ ।୪।

---

[ଏକଶ ଅଣତ୍ରିଶ]

ଝୁରି ଝୁରି ମରୁଛି ସଇ

(ରାଗ ମୋହନା ତାଳ ଫଉପଟ)

[ଛନ୍ଦ ନ କର କୁନ୍ଦନ ଗୋର ବୃନ୍ଦ]

ଝୁରି ଝୁରି ତୁ ମରୁଛି ସଇ
ସେ ହଟିଆ କପଟିଆ ନୁହେଁ ଟି କାହାର । ଘୋଷା ।
ନାଗମଣି ଶିରଧାରୀ ସଙ୍ଗ କଲୁ ନ ବିଚାରି
ଯାହା ଦୁଃଖେ ହେଲୁ ଯାର ଆହାରେ କିଶୋରୀ ! ।୧।
ମୋ ରାଣ ଟି ସୁକୁମାରୀ ! ବୁଝାଇ ନ ପାରୁ ବାରି
ରହ ଧନ ଧୈର୍ଯ୍ୟ ଧରି କରମ ଆଦରି ।୨।

ସେ ନିକୁଞ୍ଜ ବନସ୍ଥଳୀ ହସାଇ ଦେଲା ଉଗାସ୍ଥ
କାହିଁରେ ବୋହିଲୁ ରାଧେ ! ତାକୁ ଆଶା କରି ।୩।
ଦ୍ୱିଜ ଗୌର ବୋଲେ ପ୍ୟାରି କହୁଛୁ ତୋ କର ଧରି
ବକାଟବି କଥା ମନୁ ପକା ତୁ ପାଶୋରି ।୪।

---

[ ଏକଶ ପଚିଶ ]

## ମନା କରିଥିଲି ମୁହିଁ

( ରାଗ ଛୋଡ଼ପରଜ ଆଠତାଳୀ )

ଲୋ ଶ୍ରୀମତି ! ମନା କରିଥିଲି ମୁହିଁ
ସେ ନଟକୁଟିଆ କହ୍ନାଇ ଦେଖାକୁ
ଭରସିଲୁ କାହିଁ ପାଇଁ । ଘୋଷା ।
ସୁନା ଶ୍ରୀଅଙ୍ଗରେ ଛଇ ଘାଆ କଲୁ
ପକାଇ ଅଧାରି ଘୁଇ
କେତେ ଅବସ୍ଥରେ ଏକୁଟିଆଟାରେ
ଯମୁନାକୁ ଗଲୁ ଧାଇଁ ।୧।
ଜାଣିଛୁ ତ ତିନ ଦିନ ନ ଦେଖନ୍ତୁ
ଧାଇଁ ପ୍ରାଣ ଅଛୁ ଟାଇ
ଆଣିଛୁ ତ ପୁଣି କୋଳକୁ ଆଦରି
କେଉଁ ବସ୍ତୁଆସ ଦାଇ ।୨।
କାଳିଆ ନାଗର ଗରଳ ଯେ ବିଷମ
ମନ ପବନ ଶୋଷଇ
ତାଳିଆ ବର ନୟନ ଭ୍ରୁରୁ ଯାହା
କଲେ ଏ ସମସ୍ତ ଖାଇ ।୩।

ସୁଧାର ନୁହଇ ଉଧାର ହେବ କେ
ତା ଚାଲିଛ ଆମ୍ଭେ ସହୁ !
ତାର ଅତ୍ୟାଚର ଆର ନାରଖାର
କର ଦଧି ଦୁଧ ଦହୁ ।୪।
ଏଡ଼କ ମାରଣା ମୋ ମନେ ଧାରଣା
ନ ଥିଲା ଶ୍ରୀମନ୍ତ ରାଈ
କେଉଁ ଖଇଜର କଥା ସେ ବଖାଣେ
ଶୁଣି କେ ନୋହିବ ବାଇ ।।
କୂଳ ଭୂଆଷୁଣୀ ମହତ ଲୁଟଇ
କେଳ ମାପମୂଳେ ଥାଇ
ଗୌର ଦ୍ୱିଜ ବୋଲେ ଶୁନ ହୋ ତା କଥା
କହନା ଆଉ ଶୁଣାଇ ।୬।

———

[ଶବ୍ଦେ ଏକାବଳ]

ନନ୍ଦକୁଳକଳାନିଧିକ

(ନନ୍ଦସୁତ ମୋର ଜୀବକା ବୃତ୍ତ)

ନନ୍ଦକୁଳକଳାନିଧିକି
ତୋ ଚିତ୍ତ ସମ୍ପତି ଦେଲୁ କ ବକ ।।
କହିଥିଲ ଆଗରୁ ମୁହିଁ
ତାହା ଚେତ ପାଇଲୁ ନାହିଁ
(ଗୋ ଚନ୍ଦ୍ରମାମୁହିଁ !)
କେତେ ଅପବାଦ ହାଟ ବସିଯିବ
ଏ ବ୍ରଜ ବଜାରେ ନରବଧିକ । ୧ ।

ଗୋପେ ଚନ୍ଦ୍ର ଯେତେ ଗୁଆଳୀ
ସତୀ ପତିବରଣ ବାଳୀ
ସବୁଙ୍କର ଜାତି ମହତ ଛଟାକ
ସାରିଲଣି ସେହି ନଟିଆ ଠିକ ।୨।
କାହିଁସା ମୋହନା ଭୈଳକ
ଜାଣଇଁ ସେ ଭଳ ଭଳକ
ଦାଉଁ ଦାଉଁ କର ଘୁଣ୍ଡ ଚମକାଏ
ବାଉଁଶ ଯନ୍ତ୍ରର ଖଣ୍ଡିକ ଫୁଙ୍କି ।୩।
ପଡ଼ିଲୁ ବିଷମ ଦଶାରେ
ଆଉ କି ରହିବୁ ସଂସାରେ
ସଡ଼ିଲ ନିଷ୍ଠୁରେ ତୁ ଲୋକହସାରେ
ଅରଜ ବସିଲୁ ଭଲ ସିଦ୍ଧିକି ।୪।
ବୁଝୁଣ ତୋ ଯିବ କେଣିକି
ଆଗୋ ଜେମାମଣି ଏଣିକି
ବାଳୁକୀ ହୋଇ ତା ପଛେ ଗୋଡ଼ାଇବୁ
ହଜାଇ ଧିଆନ ଜ୍ଞାନ ବୁଦ୍ଧି କି ।୫।
ଗୌର ଦ୍ୱିଜ କହେ ମୋ କଥା
ଅନ୍ତରାରୁ ମନେ ରଖିଥା
ତୋ ହୃଦୟୁ ବ୍ୟଥା ନୋହିବ ଅନ୍ୟଥା
ଅନୁଭବିବୁ ବିରହ-ବ୍ୟାଧିକି ।୬।

———

[ଶବ୍ଦେ ବାଜର୍ନ]

## ଜାଣୁ ଜାଣୁ ଶ୍ରୀମତୀ

( ପୀଲୁପଠ କପଟ ପ୍ରୀତି କରି ବୁଝେ )

ଜାଣୁ ଜାଣୁ ଶ୍ରୀମତି !
ମତିଭ୍ରେଷ୍ଠାରେ ମତି ବଳାଇଲୁ ତ
ସନ୍ତାପ ସମସ୍ତେ ସମ୍ପାଦିବା ପାଇଁ
କ୍ଷୀରୋଦର ! ଖଣି ଖୋଳାଇଲୁ ତ ॥
ପଦେ ମୋତେ ଭାଳିଲୁ ନାହିଁ
କାଳୀ ହ୍ରଦେ ପଡ଼ିଲୁ ଡେଇଁ
ବିଷମ ବହ୍ନିଶିଖ ବିଷଜ୍ୱାଳା ପାଇଁ
ତା କପଟ ଖଟେ ତୁଳାଇଲୁ ତ ।୧।
ଜାଣଇ ସେ ବଣିକ ବୁଦ୍ଧି
ଧରି ନବରଙ୍ଗ ନିକତି
ଭ୍ରୂ ଭଙ୍ଗୀ ଯତନେ ଯାଚିଦେଇ ନବ
ଯୌବନ ରତନ ମୂଲାଇଲୁ ତ ।୨।
ଇନ୍ଦ୍ର ଜାଲ ବିଦ୍ୟାରେ ପୁଣ
ନନ୍ଦସୁତ ଅତି ନିପୁଣ
ଅନଙ୍ଗ ଭୂତ ଅନ୍ତରରେ ରଖି ତା
ବାକ୍ୟମନ୍ତ୍ରେ ଦେହ କଳାଇଲୁ ତ ।୩।
ତାର ବକ୍ର ଭ୍ରୂ ଭଙ୍ଗୀଛଟା
ସେ ତ ଅତି ଅନର୍ଥ ଅଠା
ତୋ ଅକ୍ଷି ଖଞ୍ଜନ ପକ୍ଷୀ ଯୁଗଳକୁ
ସାକ୍ଷାତେ ତା ଆଗେ ଖେଳାଇଲୁ ତ ।୪।

କାଁହିଁପାଇଁ ନନ୍ଦନ ! କାହିଁ
କଲୁ ବ୍ରଜ ମଣ୍ଡଳେ ଖ୍ୟାତି
ଅଦେହ ଦେବତା ବସାଇବା ପାଇଁ
ତୋ ଦେହ ଦେଉଳ ତୋଳାଇଲୁ ତ ।୫।
ତୁ ତ ଏତେ ସୁଜାଣ ହୋଇ
ତିଳେ ତର୍କ ପାରିଲୁ ନାହିଁ
କୁଞ୍ଜକାନନ କର୍ଣ୍ଣୀରବ ଅଗ୍ରତେ
ଗତିହ୍ରିଦେବକୁ ମିଳାଇଲୁ ତ ।୬।
ଗୌର ଦ୍ୱିଜ ଗାଏ ରାଧିକା
ଅର୍ଜିଲୁ ଏ ଲାଭ ଅଧିକା
ଧରାଧରଧରକରକମଳରେ
ଘନ ପୀନସ୍ତନ ଦଳାଇଲୁ ତ ।୭।

—୦—

[ଶବ୍ଦେ ଚେତନ]

ନନ୍ଦନେନ୍ଦ୍ରଚନ୍ଦ୍ର

( ରାଗ ତୋଡ଼ିପରଜ ତାଳ ଆଠତାଳୀ )

ରେ କିଶୋର ! ତୋ ବୁଦ୍ଧି ବିବେକ ହୁଡ଼ି
ନନ୍ଦ ନେନ୍ଦ ବୃନ୍ଦ ଶୋକ ସିନ୍ଧୁ ମାରେ
ଆଜ ତୁ ଗଲୁ କି ବୁଡ଼ି ।।
ଏ ଅତି ସୁଲଭ ଯେ ଦେବ-ଦୁର୍ଲ୍ଲଭ
ସେ ଯେବେ ନେଲେଣି ଜାତି
ଏଣିକି ଅନଙ୍ଗ ରଙ୍ଗ ମହୋତ୍ସବେ
ପୂହାଇବୁ ସୁଖେ ରାତି ।୧।

ତାହାଙ୍କ ପ୍ରଣୟ ଶୃଙ୍ଖଳେ ବାନ୍ଧିହେଲେ
ଆରେ ଜୀବନ ବାନ୍ଧବ !
ସେ କାଳେ ଆନ୍ତକୁ ଲେଉଡ଼ୁ କି ଆଉ
ମନେ ମୁଁ ହେଉଛୁ ସ୍ୱଭ ।୨।
ପୂର୍ବରେ ତୁ କେଉଁ ପୁଣ୍ୟ କରିଥିଲୁ
କେଉଁ ଦେବତା ମନାଇଁ
ଜାଣି ସେ ସୁକୃତ ହେଲେ ବଶୀଭୂତ
ନାଗରବର କହ୍ନାଇଁ ।୩।
ନବ ଅନୁରାଗେ ପୁଲକିତ ଅଙ୍ଗେ
ଠାରୁଛନ୍ତି କାହାକୁ ଆଖି
ଲୁଚିଲେ ଧନ ! ମରମ କଥାଟି
ଜଣାପଡ଼ ନ ଯାଏ କି ।୪।
ସାନ୍ଧ୍ୟକ ବିକାରେ ପ୍ରେମ ଜରଜରେ
ହେଲୁଣି ତ ବାଉଆଣୀ
ତୋ ପ୍ରାଣ ସର୍ବସ୍ୱ ହେଲେଣି ଅବଶ୍ୟ
ମୋହନ ମୁରଲୀପାଣି ।୫।
ଗୌର ଦ୍ୱିଜ ଗିର ଘୁଞ୍ଚାଉଁ ତୋର
ବାଲ୍ୟଦଶା ଆଜସର
କୃଷ୍ଣଧନେ ଧନୀ ହୋଇ ସଜନୀଙ୍କି
ଦେବୁ ନାହିଁଟି ପାଶୋର ।୬।

———

[ଶତେ ଚଉବନ]

## ଆଜନ୍ମ ଦୁଖୀ

(ରମାରଞ୍ଜନ ଆଜ ତ ଦଶୁନାହଁ କାଲ ଯତନ ବୃତ୍ତ)

ଆଜନ୍ମ-ଦୁଖି !

ରାଜ-ଦୁଲ୍ଲଣୀ-ସଜ-ପଙ୍କଜମୁଖି ! ଗୋ । ଘୋ.ଷା ।

ନ ବୁଝି ନ ବିଚାରି ସତ କି କଲୁ
କି ସାହସେ ଯମୁନା ପାଣିକି ଗଲୁ ଗୋ ।୧।

ବାମନ ହୋଇ ଧନ ! କେଉଁ ପସନ୍ଦେ
କର ବଢ଼ାଇ ଦେଲୁ ଗଗନ ଚାନ୍ଦେ ଗୋ ।୨।

ତୁ ତ ନୂତନା ବାଳୀ ଚତୁରମଣି
ରସ ସିନ୍ଧୁ ଲହରୀ ବଝିଲୁ ଗଣି ଗୋ ।୩।

ଏ କି ତୋ ବାଇବୁଦ୍ଧି ଅଲ୍ପଜାବର
ଉଚ୍ଛନ୍ନ ହେଲୁ ନଷ୍ଟେ କହେ ଗଉର ଗୋ ।୪।

---

[ଶତେ ପଞ୍ଚାବନ]

## ଖିଙ୍ଖିଚୂଳେ ଆଖି ଲଖିଗଲା କି

ଆଜନମ ସୁଖୀ ପଙ୍କଜମୁଖି ରେ
ଶିଖିଚୂଳେ ଆଖି ଲଗିଲ କି । ଘୋଷା ।

ଚମକି ଉଠୁଛୁ ରହି ଥକ ଥକ
ଶୁଖି ଶୁଖି ତନୁ ଯାଉଛି କାହିଁକି
ଦୁଃଖୀଧନ ଫେଡ଼ କହିବୁ ନାହିଁକି
ଥରଇ ଲାଗିଛୁ ତୋ ଗୁନ୍ତକେ ।୧।

ଲୁକ ଲୁକ ଷ୍ଵକ ଆଖେ ଦେଖୁଲୁକ
ମୂର୍ଚ୍ଛିବା ମୂର୍ଚ୍ଛେଲି ଶୁଣା ଶିଖିଲୁ କ
ମୁଁ କେ ଢପଘାତ ଦେଖୁଛି ରେ ସଖି
ତୁଙ୍କେ ହେଉ କେପାଁ ଏପର କ ।୨।
କାଳଆ ନାଗର ଅଧରାମୃତ କ
ଚୋକଦେଲୁ ତୁ କ ଢୋଇ କଉତୁକା
ପ୍ରେମ ହଳାହଳ ଶିଖିଶିଖା ଟେକ
ବୁକ୍ଲୁ ଫୁଲୀ ଜାଳ ଦେଉଛି କ ।୩।
ଜଡ଼ବୁଟି ଯନ୍ତ୍ରମନ୍ତ୍ର ତ ଏଥିକ
ନାହିଁ କଛି ଆଜ ଖୋଜଲେ ପୋଥିକ
ଗୌର ଦ୍ୱିଜ ଭଣେ ନାଗରସାଥିକ
ଅଉଷଧି ଜାଣେ ମୁଁ ଏକେକ ।୪।

———

[ଶତେ ଛପନ]

କଦେଧି ଥିଲ ପଗ ପଦ୍ମଲୁ ରେ

( ରାଗ କାନମାଦ ତାଳ ଏକତାଳୀ )

ନାଦେଧି ଥିଲ ପତ୍ନୀ ପଦ୍ମିଲ ବରେ
କାହ୍ନିକ ତୁ ଚେଣିକ ଗୁହ୍ନିଲ ରେ
ସେ ଯମୁନା ଅପୁନ ଜଗୁ ଆଳୀ ନପୁନ
କୁନ୍ତକୁ ବକ୍ଷ ଯା ପତାଇଲ ରେ ।।
ଷଷମ ବ୍ୟାଧି ଏବେ ଯୋଟିଗଲାଣି କେବେ
ନ ଭେଟିବାର ଦଶା ପାଇଲୁ ରେ

ଭଲା ନାଗର ବଷ   ଧାଇବ ଅହର୍ନିଶ
ପୀୟୂଷ ମଣି ଯାହା ଖାଇଲୁ ରେ ।୧।

କେଉଁ ସାହସେ ଧନ   ସମର୍ପି ଦେଲୁ ମନ
ଯୁବଣ୍ଠ ସଂସାରେ କି ରହିଲ ରେ
ଏଥିକି ରସନିଧି   ନାହିଁଟି ମହୌଷଧି
ଜାଣି ଦୁଃସହ ତାପ ସହିଲୁ ରେ ।୨।

ତୋର ଏ ଅଭିଳାଷ   ଥିଲା ଯେବେ ବାଳୀଶ
ଆଗରୁ ମୋତେ ଯା ନ କହିଲୁ ରେ
କି ବାଇଆଣୀ ଗୁଣ   ଆଚରିଲୁ ଶ୍ରୀମନ୍ତ
ସ୍ଥୁଳ ତ ନିନ୍ଦାବୋଝ ବୋହିଲ ରେ ।୩।

ଅପରନ୍ତ ତୋହନ   ହେବ କି ଏ ନିଦାନ
କେଉଁ କୂଳରେ ହାଦେ ନୋହିଲୁ ରେ
ଶାରମା ଗିରିଧାରୀ   ସାର ଦେଇଛୁ ଠାର
ବିରହାନଳେ ତନୁ ଦହିଲୁ ରେ ।୪।

ଦ୍ୱିଜ ଗଜର ବୋଲେ   ଶ୍ୟାମଶୋଭ ସଳଳେ
ନ ବିଗୃର ତ ଅବଗାହିଲୁ ରେ
ଏଣିକି ନିମ୍ନାଧର !   ରହ କର୍ମ ଆଦର
କେ କି କରିବ ଆପେ ଭ୍ୟାଇଲୁ ରେ ।୫।



[[illegible] ବୃନ୍ଦାବନ]

କାଳିଆ ନାଗ

( ରାଗ ଦେଶମଞ୍ଜରୀ ତାଳ ଆଠତାଳୀ )

ରେ କଣେ ଗ୍ରମଣୀ ! କୌତୁକ ରଙ୍ଗେ
ଖେଳ ନା କାଳିଆ ନାଗର ସଙ୍ଗେ ରେ । ଘୋଷା ।
ବଡ଼ ଅବିଶ୍ୱାସୀ ଅଟଇ ସେହୁ
କେବେ ତୁ ହୁଅନା ତା ଠାରେ ସ୍ନେହୀ ରେ ।୧।
ନକର କର କହୁଛି ନଗାନା
ଆଖିରକୁ ସର ଯିବୁଟି ସିନା ରେ ।୨।
ବଳ ପଡ଼ିଲେ ହୃଦୟୁ ବେଦନା
କଳି ନ ପାରିବୁ କୁନ୍ଦରଦନା ରେ ।୩।
ଘାରି ପକାଇବ ତା ବିଷଜ୍ୱାଳା
କାଳନ୍ଦୀ ଶରକୁ ଚଉ ନ ବଳା ରେ ।୪।
ଭରସ ନା ତେଣେ ନମିଷେ ଷଣେ
ଭୂସୁର ଗଉର ଚରଣ ଭଣେ ରେ ।୫।



# ଶୁଦ୍ଧିପତ୍ର

ଏ ଶୁଦ୍ଧି ପତ୍ର ଅନୁସାରେ ବହିକୁ ଆଗ ସଂଶୋଧନକରି ପାଠକରିବେ

| ପୃଷ୍ଠା | ଗୀତପଂକ୍ତି | ଭ୍ରମ | ସଂଶୋଧନ |
|---|---|---|---|
| ୧ | ୨ | ବେଦର ଗାର | ବେଦର ସାର |
| ୫ | ୬ | ଭକ୍ତପଢ଼ରେ | ଭକ୍ତପକ୍ଷରେ |
| ୬ | ୧୧ | ପାନନାଥ | ଦ୍ୱିନନାଥ |
| ୧୦ | ୬ | ଅଦ୍ଦଂନ୍ତା | ଅଦନ୍ତା |
| | ୧୦ | ଆର୍ତ୍ତୀଆର୍ତ୍ତି | ଆର୍ତ୍ତିଆର୍ତ୍ତି |
| ୧୧ | ୯ | କର ଛାଙ୍କ | କରଛାଙ୍କ |
| ୧୪ | ୧୪ | ମନେହର | ମନୋହର |
| ୧୯ | ୧ | ପାଇବ | ପାରିବ |
| ୨୩ | ୧୬ | ପହରଣ | ପହ୍ନରଣ |
| ୨୭ | ୧୬ | ଠେକାଲେକ | ଠେକ ଲୋକ |
| ୨୯ | ୧୦ | ସେଯେ | ସେ ଯେ |
| | ୧୫ | ଗୁଣ୍ଡଗୃଢରେ | ଗୁଣ୍ଡି ଗୃଢରେ |
| ୩୫ | ୪ | ନଳୀନ | ନଳିନ |
| ୪୨ | ୬ | ତିନ | ତିନ |
| ୪୩ | ୫ | ନଣ | ନଣି |
| ୪୪ | ୬ | ବାସନା | ବସ ନା |
| ୪୭ | ୧୧ | ହରିନାମେ ଗର୍ବ | ହରିନାମେ ଗର୍ଜ |
| ୫୭ | ୧୦ | ଦ୍ୱଜର | ଦ୍ୱ ଜର |
| ୫୮ | ୨ | ଅଚୈତକ | ଅଚୈତବ |
| ୬୨ | ୧୨ | ଯୁଗଳପଦେ | ଯୁଗଳପଦ |
| ୭୮ | — | ଯଶୋଦା ଭାଗ୍ୟବତୀ | ଭାଗ୍ୟବତୀ ଯଶୋଦା |
| ୮୬ | ୮ | କ୍ଷିର | କ୍ଷୀର |

| | | | |
|---|---|---|---|
| ୯୭ | ୧୧ | କକକ୍ରୁଠ | କୁକ୍‌କୁଠ |
| ୧୦୫ | ୫ | ଓୃଷ୍ଣା | ତୃଷ୍ଣା |
| ୧୦୬ | ୨ | ଅନ୍ତୁପୁର | ଅନ୍ତପୁର |
| | ୪ | କୁସନ | କୁସୁମ |
| ୧୨୨ | ୮ | ନଠନଠବର | ନବନଠବର. |
| ୧୨୫ | ୯ | ହି ରଙ୍ଗ | ହିଭଙ୍ଗ |
| ୧୨୭ | ୧୯ | ଦଛଜତ | ଦଗ୍ରଜତ |
| ୧୪୬ | ୨ | ସଖି ! ଘନଶ୍ୟାମ ମୁରଲୀ | ସଖି ! ଶ୍ୟାମଘନ ମୁରଲୀ ସୁସ୍ୱରେ |
| ୧୪୮ | ୧୧ | ନଥର | ନଜର |
| ୧୫୬ | ୧୨ | ଭ୍ରମର | ଭ୍ରମଇ |
| ୧୬୭ | ୧୯ | ଖାର | ଛଇ |
| ୧୬୮ | ୨ | ଛାପଇଲୁ | ଛା ପାଳରୁ |



